# କଥା କୁଟୁମ୍ବ

ସଂଗ୍ରହ ଓ ସଂପାଦନା : ଡକ୍ଟର ଗିରିବାଳା ମହାନ୍ତି
ପ୍ରକାଶକ : ଓଡ଼ିଶା ସାହିତ୍ୟ ଏକାଡେମୀ
ସଂସ୍କୃତି ଭବନ, ଭୁବନେଶ୍ୱର - ୭୫୧୦୧୪
*ପ୍ରଥମ ମୁଦ୍ରଣ : ୨୦୦୯*
*ମୁଦ୍ରଣ :* ପ୍ରିଣ୍ଟେକ ଅଫସେଟ୍ ପ୍ରା . ଲିଃ, ଭୁବନେଶ୍ୱର
*ମୂଲ୍ୟ : ଟ ୫୦.୦୦ (ପଚାଶ ଟଙ୍କା ମାତ୍ର)*

# Katha Kutumba

*Collection & Edited by : Dr. Giribala Mohanty*
*Published by : Orissa Sahitya Akademi*
Sanskruti Bhawan, Bhubaneswar - 751014
*First Print : 2009*
*Printed at :* Print-Tech Offset (P) Ltd. Bhubaneswar
*Price : Rs 50.00*
*(Rupees Fifty Only)*
*ISBN : 81-7586-191-6*

# ମୁଖବନ୍ଧ

ଓଡ଼ିଆ ସାହିତ୍ୟ ଇତିହାସର ଜଣେ ପ୍ରଥିତଯଶା ସାରସ୍ୱତ ସାଧକ ଭାବରେ ଫକୀରମୋହନ ସେନାପତି ଅଗ୍ରଗଣ୍ୟ । ତାଙ୍କର ଲଛମନିଆ କ୍ଷୁଦ୍ରଗଳ୍ପ କେବଳ ଓଡ଼ିଆ ସାହିତ୍ୟରେ ନୁହେଁ, ସମଗ୍ର ଭାରତୀୟ କଥା ସାହିତ୍ୟର ପ୍ରଥମ ସୃଷ୍ଟି ଭାବରେ ଗୌରବ ଲାଭ କରିଛି । ଫକୀରମୋହନ ଜଣେ ମାନବବାଦୀ ଓ ସମାଜ ସଂସ୍କାରକ ସ୍ରଷ୍ଟା ଥିବାରୁ ତାଙ୍କ ସୃଷ୍ଟିଗୁଡିକରେ ତତ୍‌କାଳୀନ ଓଡ଼ିଆ ସମାଜର ନିଛକ ଚିତ୍ର ସ୍ପଷ୍ଟ ଭାବରେ ପ୍ରତିଫଳିତ ହୋଇପାରିଛି । ଏଥିସହିତ ତାଙ୍କ କାହାଣୀର ଚରିତ୍ରମାନେ ସାଧାରଣ ଭାବରେ ଆମ ସମାଜରେ ଆତଯାତ ହେଉଥିବାରୁ ଲୋକପ୍ରିୟତାରେ ଶୀର୍ଷସ୍ଥାନ ଅଧିକାର କରିଛନ୍ତି । ଯେପରି ଛମାଣ ଆଠଗୁଣ୍ଠର 'ଚମ୍ପା' ଓ ରାଣ୍ଡିପୁଅ ଅନନ୍ତାର 'ଅନନ୍ତା' ତଥା ଡାକମୁନ୍‌ସୀର 'ହରିସିଂହ' ଚରିତ୍ରମାନଙ୍କୁ ରୂପାତ୍ମକ ପରିଚୟ ଦେଇ ଫକୀରମୋହନ ତାଙ୍କ ସୃଷ୍ଟିର ମାନ ବୃଦ୍ଧି କରିବା ସଂଗେ ସଂଗେ ଯେଉଁଭଳି ଭାବରେ ଚିତ୍ରଣ କରିଛନ୍ତି, ତାହା ପାଠକେ ଉଚ୍ଚାରଣ ମାତ୍ରେ ବ୍ୟଞ୍ଜନାକୁ ସଂପୂର୍ଣ୍ଣ ଭାବରେ ବୁଝିଯିବେ ।

ଫକୀରମୋହନ ଆମ ଭାଷା ସାହିତ୍ୟର ଗୌରବ । ତାଙ୍କ ସୃଷ୍ଟିର ଏକଶହ ପଚାଶବର୍ଷ ପୂର୍ତ୍ତୀ ହେବାକୁ ଯାଉଅଛି । ସେ ଯେତେ ଯେତେ ପୁରୁଣା ହେଉଛନ୍ତି, ତାଙ୍କୁ ଓଡ଼ିଆ ସାହିତ୍ୟ ସେତେ ସେତେ ସ୍ମରଣ କରୁଛି, ତାଙ୍କ ସୃଷ୍ଟିକୁ ରୋମନ୍ଥନ କରୁଛି । ଏହିଭଳି ସମୟରେ ଓଡ଼ିଶା ସାହିତ୍ୟ ଏକାଡେମୀ ଫକୀରମୋହନଙ୍କ ଚରିତ୍ର ସଂପର୍କରେ ପରିଚୟାତ୍ମକ ବିବରଣୀ ସବଂଳିତ ଏହି ପୁସ୍ତକ 'କଥା କୁଟୁମ୍ବ' ଓଡ଼ିଆ ପାଠକମାନଙ୍କୁ ଉପହାର ଦେବାକୁ ଯାଉଛନ୍ତି, ଯାହା ଫକୀରମୋହନଙ୍କ ପ୍ରତି ଏ ଜାତିର ପ୍ରଣତି ନିବେଦନ ବୋଲି ମୁଁ ସ୍ୱୀକାର କରୁଛି । ଓଡ଼ିଆ ଭାଷା ଓ ସାହିତ୍ୟର ଅନ୍ୟତମ ପ୍ରବୀଣା ସାଧିକା ଡକ୍ଟର ଗିରିବାଳା ମହାନ୍ତି ଫକୀରମୋହନଙ୍କ କଥା ସାମ୍ରାଜ୍ୟର ଚରିତ୍ରମାନଙ୍କୁ ସାଉଁଟି ଏକାଠି ସଂକଳିତ କରି ପୁସ୍ତକ ଆକାରରେ ପ୍ରକାଶ କରିବା ନିମନ୍ତେ ଓଡ଼ିଶା ସାହିତ୍ୟ ଏକାଡେମୀକୁ ସୁଯୋଗ ପ୍ରଦାନ କରିଥିବାରୁ ଏକାଡେମୀ ତାଙ୍କର ଏହି ସାରସ୍ୱତ ପ୍ରୟାସକୁ ସାଧୁବାଦ ଜ୍ଞାପନ କରୁଅଛି ।

ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରତିଷ୍ଠାର ପଚାଶ ବର୍ଷ ପୂର୍ତ୍ତୀ ସୁବର୍ଣ୍ଣ ଜୟନ୍ତୀ ପାଳନ ଅବକାଶରେ ଫକୀରମୋହନ ସାହିତ୍ୟରେ ଏକ ନୂତନ ପ୍ରକାଶନ ସଂଯୋଗ କରିବାର ସୌଭାଗ୍ୟ ଏକାଡେମୀ ପାଇଥିବା ଅତ୍ୟନ୍ତ ଆନନ୍ଦର କଥା । ଫକୀରମୋହନଙ୍କ ସାହିତ୍ୟକୁ ଏହି ପୁସ୍ତକଟି ଅଧିକ ରସାଣିତ କରିବ ଏହା ନିଃସନ୍ଦେହ । ଏକାଡେମୀର ପୂର୍ବ ପ୍ରକାଶନ ଗୁଡିକ ଭଳି 'କଥା କୁଟୁମ୍ବ' ଓଡ଼ିଆ ପାଠକ ମାନଙ୍କଦ୍ୱାରା ଗ୍ରହଣୀୟ ହେଲେ ଏକାଡେମୀର ଶ୍ରମ ଲାଘବ ହେବ ବୋଲି ମୋର ଆଶା ଓ ବିଶ୍ୱାସ ।

ଡକ୍ଟର ହରପ୍ରସାଦ ପରିଛା ପଟନାୟକ
ସଚିବ

ଭୁବନେଶ୍ୱର
ତା୨୪.୦୬.୨୦୦୯ (ଶ୍ରୀଗୁଣ୍ଡିଚା)

# ପରିଚୟର ପରିଚୟ

ବ୍ରଜମୋହନଙ୍କୁ ବଞ୍ଚାଇବା ଲାଗି ଶୁଭେଚ୍ଛୁଗଣ ତାକୁ ଫକୀରମୋହନରେ ପରିଣତ କରି ଦେଇଥିଲେ । ଫକୀରମୋହନ ନିଜେ ମଧ୍ୟ ଜଣେ ଶୁଭେଚ୍ଛୁ ପାଲଟି ଓଡ଼ିଆ କଥା ସାହିତ୍ୟକୁ ସଫଳ ଓ ସୁନ୍ଦର ଭାବେ ବଞ୍ଚିବା ଲାଗି ନୂଆ ଉପାଦାନ ଦେଇ ତାକୁ ରୂପାନ୍ତରିତ କଲେ । ପୁରୁଣା ଭିତରେ କଅଁଳେଇ ଦେଲେ ନୂଆକୁ । ନୂଆ ଭିତରେ ଭରିଦେଲେ ବଞ୍ଚିବା ଆଉ ଛିଡ଼ା ହେବାର ସାମର୍ଥ୍ୟକୁ । ସେ ସାମର୍ଥ୍ୟ ଏତେ ପୋଖତ ଭାବେ, ଏତେ ସୁଚାରୁରୂପେ 'ନୂଆ'ଟି ଭିତରେ ଭରିଗଲା ଯେ, ସେ ହେଇଗଲା ଆଦର୍ଶ । ତାକୁ କରାଗଲା ଅନୁସରଣ । ସେଇ ଅନୁସରଣ ଭିତରେ ଫକୀରମୋହନଙ୍କ ସାମର୍ଥ୍ୟର ପ୍ରବାହ ହେଲା ଦୃଢ଼ରୁ ଦୃଢ଼ତର ଭାବେ ସ୍ୱୀକୃତ ।

ସେଇ ସାମର୍ଥ୍ୟର ବିବିଧ ତର୍ଜମା, ନାନା ଅନୁଶୀଳନ ଓଡ଼ିଆ ସାହିତ୍ୟରେ ଘଟି ଚାଲିଛି । କଥା ସାହିତ୍ୟରେ ପାତ୍ରମାନଙ୍କର ଅପାରଂପରିକ ଓ ଜୀବନ -ବିଶ୍ୱସ୍ତ ଚିତ୍ରଣ ଭିତରେ ସେନାପତିଙ୍କ କଥା ସାହିତ୍ୟର ସାମର୍ଥ୍ୟ ହେଇଛି ସ୍ୱୀକୃତ । ଏ ପାତ୍ରମାନେ ତତ୍‌କାଳରେ ଥିଲେ ଏତେ ବେଶି ନୂଆ ଯେ, ସୃଷ୍ଟି କରିଥିଲେ ବିସ୍ମୟ । ସମକାଳରେ ସେମାନେ ଏତେବେଶୀ ସମକାଳୀନ ଯେ, ସୃଷ୍ଟି କରୁଛନ୍ତି ବିସ୍ମୟ ।

ଫକୀରମୋହନଙ୍କ ଏହି କଥା -କୁଟୁମ୍ବମାନଙ୍କର ପରିଚୟ ପ୍ରଦାନର ପ୍ରାଥମିକ ଲକ୍ଷ୍ୟନେଇ ଏ ଗ୍ରନ୍ଥଟି ପରିକଳ୍ପିତ । ଫକୀରମୋହନଙ୍କୁ ପଢୁଥିବା / ପଢ଼ିଥିବା ବ୍ୟକ୍ତିମାନଙ୍କ ପାଇଁ ଏ କୁଟୁମ୍ବଜନଙ୍କୁ ଚିହ୍ନିବା ଆଦୌ କଷ୍ଟକର ନୁହେଁ, ବିଶେଷତଃ ଗୁରୁତ୍ୱପୂର୍ଣ୍ଣ ଚରିତ୍ରମାନଙ୍କୁ । ତେବେ ଏଇ ଗୁରୁତ୍ୱ ବପୁ, ବିଦ୍ୟା ବା ବିତ୍ତ ଭିତ୍ତିକ ଆଦୌ ନୁହେଁ, ଫକୀରମୋହନଙ୍କ ଭାଷାରେ 'ଲୋକ ବିଶେଷକୁ ସ୍ଥାନ ବିଶେଷରେ ଦେଖିଲେ ମନରେ ଭାବବିଶେଷର ଉଦୟ ହେବା ସହଜକଥା' ଏଇ ଭାବ ହିଁ ସାଧାରଣରେ ଅସାଧାରଣର ସ୍ପର୍ଶ ଦିଏ । ଅଦୃଶ୍ୟକୁ ଦୃଶ୍ୟକରେ । ସେମାନଙ୍କଠି କରେ 'ଗୁରୁତ୍ୱ' ଆରୋପ ତଥା ସେମାନଙ୍କୁ କରେ ସ୍ମରଣୀୟ ।

ଏହି ସ୍ମରଣୀୟତ୍ୱର ମଧ୍ୟ ଏକ ନିର୍ଦ୍ଦିଷ୍ଟ ସୀମା ଅଛି । ଫକୀରମୋହନଙ୍କ ସାହିତ୍ୟ ସହ ଅନଭ୍ୟସ୍ତ ବ୍ୟକ୍ତିଟି କାହାରି ଭାଷଣ ଶୁଣୁଶୁଣୁ, ଆଲୋଚନା ପଢୁପଢୁ ରାମଚନ୍ଦ୍ର ମଙ୍ଗରାଜ ବା ଭଗିଆ ଭିତରେ, ଚିତ୍ରକଳା ବା ସାରିଆ ଭିତରେ ଥିବା ପାର୍ଥକ୍ୟ ନାମୋଚ୍ଚାରଣ ମାତ୍ରେ ବୁଝିପାରେକି ? ଅନୁଭବ କରିପାରେକି 'ଭଦରଖିଆ ଟୋକା' ବା 'ରାଣ୍ଡୀପୁଅ ଅନନ୍ତା' କହିଦେଲେ ତନ୍ମଧ୍ୟରୁ ଦ୍ୟୋତିତ ବ୍ୟଞ୍ଜନାକୁ ? ଅଥଚ ଏସବୁର ମାଧ୍ୟମରେ ହିଁ ତ ଚିହ୍ନିହେବ

ସେଇ ସାମର୍ଥ୍ୟକୁ, ଜାଣିହେବ ଫକୀରମୋହନଙ୍କୁ ! କିନ୍ତୁ ସେ ଚରିତ୍ରମାନଙ୍କୁ ଜାଣିବାକୁ ଆଗ୍ରହୀ ଉପରୋକ୍ତ ବ୍ୟକ୍ତିମାନେ ସମଗ୍ର ଉପନ୍ୟାସଟିଏ ବା ଗଳ୍ପଟିଏ ପୂର୍ଣ୍ଣରୂପେ ନ ପଢ଼ିଲେ ଚରିତ୍ରଟିକୁ ଉପଯୁକ୍ତ ଭାବେ ଜାଣିପାରିବେ ନାହିଁ । ଉପନ୍ୟାସ ବା ଗଳ୍ପ ସହଜରେ ସର୍ବତ୍ର ଉପଲଭ୍ୟ ନ ହୋଇପାରେ, ସେତକ ପୂର୍ଣ୍ଣାଙ୍ଗ ପଢ଼ିବାର ଅବସର ବ୍ୟକ୍ତି ବିଶେଷଙ୍କର ନ ଥାଇ ପାରେ ! ଅତଏବ ସେଇ ଦୃଷ୍ଟିରୁ ମଧ୍ୟ ଗ୍ରନ୍ଥଟି ପରିକଳ୍ପିତ ।

ଫକୀରମୋହନଙ୍କ ଚରିତ୍ରମାନେ ଏତେ ସହଜଲଭ୍ୟ ଓ ସାଧାରଣ ଯେ ସେମାନଙ୍କୁ ଥରେ କେଉଁଠି ଦେଖି ଆଉଥରେ ଦେଖିଲାବେଳେ ଏକାପରି ଲାଗୁଥାଏ । ନାଁଟି ଶୁଣିଲା ଶୁଣିଲା ପରି ଲାଗୁଥାଏ । ଗୋଟିଏ ନାଁରେ ଏକାଧିକ ଚରିତ୍ର ଆସି ଗୋଳମାଳିଆ ସ୍ଥିତି ସୃଷ୍ଟି କରନ୍ତି । ଅତଏବ ଏହି ଦୃଷ୍ଟିକୋଣରୁ ମଧ୍ୟ ଗ୍ରନ୍ଥଟି ପାଠକୀୟ ସ୍ମରଣ ଶକ୍ତିକୁ ସତେଜ କରିବା ସଙ୍ଗେ ସଙ୍ଗେ ଚରିତ୍ରମାନଙ୍କ ଉତ୍ସ ଓ ପ୍ରସଙ୍ଗ ଜଣାଇ ନିଜକୁ ଅଧିକ ଉପଯୋଗୀ କରିପାରିବ । ଏପରି କେତେକ ଚରିତ୍ରଙ୍କ ସୂଚନା ନିମ୍ନରେ ଦିଆଗଲା, ଯେଉଁମାନେ ଉପରୋକ୍ତ ମତେ ପାଠକର ଭାବଜଗତରେ ଏକ ଗୋଳମାଳିଆ ସ୍ଥିତି ସୃଷ୍ଟି କରନ୍ତି ।

| ଚରିତ୍ରର ନାମ | ଉତ୍ସ | ଭୂମିକା |
|---|---|---|
| ଗୁରୁବାରୀ | ବିରେଇ ବିଶାଳ | ଗୌଣଚରିତ୍ର, ବିରେଇର ମାଈ |
| | ଗୁରୁବାରୀ | କମଳା ପ୍ରସାଦ |
| ଗୋରାପ | ପୋଇଲୀ | |
| ଚମ୍ପା | ଛମାଣ ଆଠଗୁଣ୍ଠ | ଖଳଚରିତ୍ର, ଖଳନାୟିକା |
| ଚମ୍ପା | ସୁନାବୋହୂ | ଭଲ ଚରିତ୍ର, |
| ନିମା | ସୁନାବୋହୂ | ନାୟିକା, ଅଳସୁଆ |
| ନିମା | ପ୍ରାୟଶ୍ଚିତ୍ତ | ଗୌଣ ଚରିତ୍ର, ପୋଇଲି |
| ପଦୀ | ସଭ୍ୟଜମିଦାର | ପୋଇଲି |
| ପଦୀ | ମାଧ ମହାନ୍ତିଙ୍କ କନ୍ୟାସୁନା | ଗୁରୁତ୍ୱପୂର୍ଣ୍ଣ ଚରିତ୍ର |
| ପଦୀ | ଗାରୁଡ଼ି ମନ୍ତ୍ର | ସହାୟକ ଚରିତ୍ରର ଦାସୀ |
| ମାଳତୀ | ଛମାଣ ଆଠଗୁଣ୍ଠ | ରାମଚନ୍ଦ୍ର ମଙ୍ଗରାଜଙ୍କ ସାନଝିଅ |

| | | |
|---|---|---|
| ମାଳତୀ | ମାଧମହାନ୍ତିଙ୍କ କନ୍ୟାସୁନା | ନାୟିକା |
| ପଦ୍ମାବତୀ | ପାଠୋଇବୋହୂ | ରତ୍ନାକର ମା |
| ପଦ୍ମାବତୀ | ଅଧର୍ମବିତ୍ତ | ନାୟିକା |
| ସାଆନ୍ତାଣୀ | ଛମାଣ ଆଠଗୁଣ୍ଠ | ଗୁରୁତ୍ୱପୂର୍ଣ୍ଣ ଚରିତ୍ର |
| ସାଆନ୍ତାଣୀ | ସଭ୍ୟଜମିଦାର | ପୁତ୍ର ବିମୁଖ ମା |
| ସାଆନ୍ତାଣୀ | ଗାରୁଡ଼ି ମନ୍ତ୍ର | ପୁତ୍ରସ୍ନେହୀ ମା |
| ଲଳିତା ଦାସ | ଛମାଣ ଆଠଗୁଣ୍ଠ | ବାବାଜୀ |
| ଲଳିତା ଦାସ | ଅଧର୍ମବିତ୍ତ | ମଠମହନ୍ତ |
| ରଙ୍ଗାଧର ମହାନ୍ତି | ସଭ୍ୟଜମିଦାର | ବିଶ୍ୱସ୍ତ ପାଞ୍ଜିଆ |
| ରଙ୍ଗାଧର ମହାନ୍ତି | ବଗଲା ବଗୁଲୀ | ଅବଧାନ |
| ମୁକୁନ୍ଦା | ଛମାଣ ଆଠଗୁଣ୍ଠ | ହଳିଆ |
| ମୁକୁନ୍ଦା | ରାଣ୍ଡୀପୁଅ ଅନନ୍ତା | ଜନୈକ ଚାଟ |
| ରାଜୀବଲୋଚନ | ସଭ୍ୟଜମିଦାର | ନଷ୍ଟଚରିତ୍ର ନାୟକ |
| ରାଜୀବଲୋଚନ | ପ୍ରାୟଶ୍ଚିତ୍ତ | ଖଳଚରିତ୍ର |
| ନବଘନ ଦାସ | ସୁନାବୋହୂ | ପୁଲିସ ଜମାଦାର |
| ନବଘନ ଦାସ | ଗାରୁଡ଼ି ମନ୍ତ୍ର | ନାୟକ ମଦନର ଅଜା |

ଉପରୋକ୍ତ ସାରଣୀରୁ ଜଣାଯିବ ନାମଗତ ସାମ୍ୟ କିପରି ଫକୀରମୋହନଙ୍କ କଥା - କୁଟୁମ୍ବଙ୍କୁ ଚିହ୍ନିବାରେ ଭ୍ରାନ୍ତି ଉପୁଜାଇ ପାରେ ।

ଗ୍ରନ୍ଥଟିର ପରିକଳ୍ପନା ମୂଳରେ ଅଛି ଏପରି ନିଜର ଆବଶ୍ୟକତା, ବାହ୍ୟତଃ ଯାହା ଗୁରୁତ୍ୱହୀନ ମନେହେବ ଅଥଚ ଆପଣା କ୍ଷେତ୍ରରେ ତାହାର ଗୁରୁତ୍ୱ ସ୍ୱୀକୃତ ।

କଥା କୁଟୁମ୍ବର ଚରିତ୍ର ପରିଚୟ ତିନୋଟି ସ୍ତରରେ କରାଯାଇଛି । ପ୍ରଥମଟି ଚରିତ୍ରମାନଙ୍କର ରୂପାତ୍ମକ ପରିଚୟ, ଯେପରି ଫକୀରମୋହନ ଚିତ୍ରଣ କରିଛନ୍ତି । ରୂପ ମାଧ୍ୟମରେ ହିଁ ତାଙ୍କର ବ୍ୟଞ୍ଜନା ବୁଝିହେବ । ଚିହ୍ନିହେବ ସେ ଚରିତ୍ରକୁ ସହଜ ଭାବେ । ଚମ୍ପା କି ରାଘୋ ମହାନ୍ତିତ ଏଥିପାଇଁ ସ୍ମରଣୀୟ । ଏତଦ୍ ବ୍ୟତୀତ ସେମାନଙ୍କ ଭୂମିକା ଉପନ୍ୟାସ ବା ଗଳ୍ପରେ କ'ଣ, କେଉଁ ପ୍ରସଙ୍ଗରେ ସେମାନେ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଉଠନ୍ତି ଓ ତା'ର ସାମାଜିକ ଆବେଦନ କ'ଣ ତା' ବିଚାର କରି ମନ୍ତବ୍ୟ ପ୍ରଦତ୍ତ ହୋଇଛି ।

ଯେଉଁମାନଙ୍କର ଅତୀତ ସଂପର୍କରେ ଧାରଣା ଦିଆଯାଇଛି, ତାହାକୁ ସୂଚିତ କରାଯାଇଛି । ଅନ୍ୟ ଭାବେ କହିବାକୁ ଗଲେ ଯେଉଁମାନଙ୍କ ଜୀବନୀ ପ୍ରଦତ୍ତ ସେମାନଙ୍କର ସେ ଜୀବନୀର ରେଖାଚିତ୍ର ଆଲୋଚ୍ୟ ଗ୍ରନ୍ଥରେ ପ୍ରଦତ୍ତ । ପ୍ରସଙ୍ଗତଃ ରାଣ୍ଡୀପୁଅ ଅନନ୍ତାର ସୁବଳ ମହାକୁଡ଼ କଥା କୁହାଯାଇପାରେ ।

ଚରିତ୍ରମାନଙ୍କୁ ଅକ୍ଷରାନୁକ୍ରମେ ସଜ୍ଜିତ କରାଯାଇଛି । ଫଳତଃ ଏହା ଅଧିକତର ଶୃଙ୍ଖଳିତ ଭାବେ ପାଠକଙ୍କ ଆଗକୁ ଆସିପାରିବ ଓ ସମନାମବାଚକ ଅନ୍ୟ ଚରିତ୍ରମାନଙ୍କ ସଂପର୍କରେ କୌତୂହଳୀ ପାଠକର କୁତୂହଳ ଚରିତାର୍ଥ ହେବ । ସମନାମବାଚକ ଚରିତ୍ରମାନଙ୍କର କ୍ରମ ସେମାନଙ୍କ ପ୍ରକାଶ କାଳକୁ ଭିତ୍ତିକରିଛି । ଯେଉଁମାନେ ଗଳ୍ପ ଉପନ୍ୟାସର ଉତ୍ସରୁ ଚରିତ୍ରର ପରିଚୟ ଖୋଜିବାକୁ ଚାହିଁବେ ସେମାନେ କଥାନୁକ୍ରମକ ସଜ୍ଜିତ ଚରିତ୍ର-ପରିଚୟାଂଶଟି ଦେଖିପାରନ୍ତି । ଯେଉଁଠି ଉପନ୍ୟାସ ଓ ଗଳ୍ପଗୁଡ଼ିକର ସଜ୍ଜୀକରଣ ସେମାନଙ୍କର ପ୍ରକାଶ କାଳକୁ ଭିତ୍ତିକରି ଗ୍ରଥିତ । ଯେଉଁ ଅଂଶଗୁଡ଼ିକ ଉଦ୍ଧୃତିରେ ରହିଛି, ସେଗୁଡ଼ିକ ଫକୀରମୋହନଙ୍କ ଭାଷା ।

ଏହି ପୁସ୍ତକର ପ୍ରକାଶନ ଅବସରରେ ଏହାର ପ୍ରସ୍ତୁତିରେ ମୋର ସହାୟକ ଶ୍ରୀ ଅମ୍ବରୀଷ ଦିଣ୍ଡା ଓ ଅଧ୍ୟାପକ ଡ. ରବୀନ୍ଦ୍ରକୁମାର ବାସଙ୍କୁ ସ୍ମରଣ କରୁଛି । ସେମାନଙ୍କ ଶ୍ରମ ଓ ସମୟଦାନ ଏ ଗ୍ରନ୍ଥକୁ ସାକାର କରିଛି । ସେମାନେ ଧନ୍ୟବାଦାର୍ହ । ଓଡ଼ିଶା ସାହିତ୍ୟ ଏକାଡେମୀ ଏପରି ଏକ ଅବ୍ୟାବସାୟିକ ସଂସ୍ଥା ଗ୍ରନ୍ଥ ମୁଦ୍ରଣ ଦିଗରେ ଆଗ୍ରହ ପ୍ରଦର୍ଶନ କରିଥିବାରୁ ମୁଁ କୃତଜ୍ଞ ।

ପୁସ୍ତକଟିର ଉପଯୋଗିତା ସିଦ୍ଧ ହେଲେ ଖୁସିହେବି ।

ଡକ୍ଟର ଗିରିବାଳା ମହାନ୍ତି

ତା ୧/୧/୨୦୦୯
ବିଶ୍ୱଭାରତୀ, ଶାନ୍ତିନିକେତନ
ପଶ୍ଚିମ ବଂଗ

# ସୂଚୀ

**ଅର୍ଜୁନା** - (ପାଠୋଈ ବୋହୂ) ବାବୁ ଗୋପାଳଚରଣ ପଟ୍ଟନାୟକଙ୍କ ଘରେ କାମଦାମ କରିବାକୁ ଥିବା ଭଣ୍ଡାରୀ ପିଲା । ଅଶିକ୍ଷିତା ସରସ୍ୱତୀଙ୍କର ସ୍ୱାମୀ ଅନ୍ୟସ୍ତ୍ରୀ ପାଖକୁ ଯାଉଥିବାର କାଳ୍ପନିକ ସନ୍ଦେହ ବେଳେ ଯେ ପାଖେ ପାଖେ ରହି ତାକୁ ସାନ୍ତ୍ୱନା ଦେଇଛି ତଥା ସାଆନ୍ତ ଗୋପାଳଚରଣଙ୍କୁ ସାଆନ୍ତାଣୀଙ୍କ ସଂପର୍କିତ ଦୁର୍ଘଟଣାର ଖବର ଜଣାଇଛି ।

**ଅନନ୍ତ ପାଢୀ** - (ଅଧର୍ମବିତ୍ତ) ବିଢେ ନରହରିପୁର ଶାସନର ଶାସନୀ ବ୍ରାହ୍ମଣ । କୁବେର ସାହୁର ଶୋଷଣ ବିରୋଧରେ ଡକାଯାଇଥିବା ବ୍ରାହ୍ମଣସଭାରେ ଉପସ୍ଥିତ ଥାଇ ସାହୁ ବିରୁଦ୍ଧରେ ମତାମତ ଦେଇଥିଲେ ।

**ଅନନ୍ତା** - (ରାଣ୍ଡୀପୁଅ ଅନନ୍ତା) ଗଳ୍ପର କେନ୍ଦ୍ରୀୟ ଚରିତ୍ର । ପିତା ସୁବଳ ମହାକୁଡ଼ ଓରଫ ସିଂହ ପ୍ରଥମେ ମଇଁଷିଆଳ ଥିଲା ପରେ ପୁଲିସ୍ କନେଷ୍ଟବଳ ହେଲା ଓ ମୃତ୍ୟୁବେଳକୁ ଜମାଦାର ହୋଇଥିଲା । ପିତାର ମୃତ୍ୟୁବେଳେ ଚାରିବର୍ଷ । ମା'ର ଅନନ୍ତାକୁ ବୟସର ସ୍ନେହ ଓ ନିରାପତ୍ତା ଭିତରେ ବଡ଼ହେଲା । ମା ତାକୁ ଏମିତି ଖାଦ୍ୟ ପରଷୁଥିଲା 'ଗୋଟାବଗଡା ଚାଉଳ ପାଞ୍ଚସେର ଚୂଲୀରେ ବସାଇଦିଏ, ତିନିସେର ଅନ୍ଦାଜ କଡ଼ଫୁଟା ପେଜୁଆ ଅନ୍ନ ସେ ପିତଳରେ ଢାଳି ପୁଅ ପାଖରେ ପରଷିଦିଏ । ଚୋପାମିଶା ବିରିଡାଲି କଂସାଏ, ନୋହିଲେ ଶାଗ ମାମଡି ସିଝାସଜି କରି ପୁଅ ପାଖରେ କଂସାଏ ବସାଇଦିଏ । ଅନନ୍ତା ଭାତଖାଇସାରି ଡାଲି ଟକ ପିଇଦିଏ । ସିଂହାଣୀ ପୁଅଲାଗି ଗୋଟିଏ ଗାଈ ବାନ୍ଧିଛି । ଦିନକୁ ଚାରିସେର ଦୁଧଦିଏ । ଅନନ୍ତା ଭାତ ଖାଇସାରି ସେ କଞ୍ଚାଦୁଧ ଟକ ପିଇଦିଏ ।' ଆଉ ଏମିତିଭାବେ ଦଶବରଷର ପିଲାଟାକୁ ଲୋକେ କୋଡ଼ିଏ ବରଷର ଭେଣ୍ଡିଆ ବୋଲି ଠଉରିଲେ । ଯେଥିଲା ମନୁଆ । ତା' ବ୍ୟକ୍ତିତ୍ୱର ଏହା ଏକ ଉଲ୍ଲେଖନୀୟ ବୈଶିଷ୍ଟ୍ୟ । ମନ ହେଲାତ ଅନ୍ୟଲାଗି ଅକାତରେ କାମକଲା, ନହେଲେ ସବୁ ଭାଙ୍ଗିରୁଜି ଏକାକାର କରିଦେଲା । ତାର ଉତ୍ପାତରେ ସାରା ଗାଁ ହେଉଥିଲା ବିବ୍ରତ । ଶାରୀରିକ, ଭୋଜନ, ସାହସ ଓ ପରାକ୍ରମରେ ସେ, ଥିଲା ତା ବାପା ଅନୁରୂପ । ନଈବଂଧ ପାଣିସୁଅକୁ କୌଣସିମତେ ଅଟକାଇ ମାଟିପକାଇବାକୁ ତାର ନିର୍ଦ୍ଦେଶ ଭିତରେ ଓ ସୁଅ ଅଟକିବାପରେ ସେ ଦୁଇଫୁଟ ମାଟିତଳେ ପୋତି ହୋଇଯାଇଥିବା ଜଣାପଡିବାଭିତରେ ଏଇ ହୁରୁମା, ଉତ୍ପାତିଆ, ମନୁଆ ପିଲାଟିର ଅନ୍ୟ ଏକ ପରିଚୟ ଫୁଟିଉଠିଚି । ସେ ପରିଚୟ ଭିତରେ ଅନନ୍ତା ଅସାମାନ୍ୟ ହୋଇ ଉଭା ହେଇପଡ଼େ । ତାର ତ୍ୟାଗ, ତାର ମହନୀୟତା ତାକୁ ଆଦର୍ଶ ସ୍ଥାନୀୟ କରିଦିଏ ।

**ଅନୀଆଈ** - (ସୁନାବୋହୂ) ଲେଖାଯୋଖାରେ ବିମଳା ଦେଈଙ୍କ ପିଉସୀ । ଅନୀଆଈର ବଂଶଲତା ଅଜ୍ଞାତ । ଆଦ୍ୟ ଜୀବନରେ ଇଏ ଥିଲା କଳିହୁଡ଼ି । ପରର ଉପକାର ଓ ପର ସହ ଭାବକରିବା ମଧ୍ୟ ଏହାର ସହଜାତ ଗୁଣ ଥିଲା । ଗାଁ ଲୋକେ ଏହାର ପରାମର୍ଶ ଗ୍ରହଣ କରୁଥିଲେ । ଶିବୁର ବିବାହ ଉଦ୍‌ଯୋଗ ଏହାଙ୍କ ଦ୍ୱାରା ହୋଇଥିଲା । ବୋହୂକୁ କାମିକା କରାଇବା ପାଇଁ ମଧ୍ୟ ସୂତ୍ର ବାହାରକରିବା କାର୍ଯ୍ୟ ଏହାରି ଘରେ ଓ ଏହାରି ସହଯୋଗ କ୍ରମେ ହୋଇଥିଲା ।'

**ଅପିଆଈ** - (ବିରେଇ ବିଶାଳ) କମଳିର ଗାଁର ଲେଖାଯୋଖା ଆଈ । ଏହାଙ୍କ ଆଗରେ କମଳି ମନକଥା ଫିଟାଇ କହିଛି ଓ ଇଏ ରାଘବ ପାତ୍ରକୁ କମଳିର ମନକଥା ଜଣାଇଛି।

**ଅବଦୁଲ ଶୋଭାନ ଖାଁ** - (ପୁନର୍ମୂଷକୋଭବ) ରାମା ବାରିକ ନିମନ୍ତେ ନିଯୁକ୍ତ ଓକିଲ ବିଶ୍ୱଭାରତୀ । ଯେ ପ୍ରମାଣ କରିଥିଲେ ରାମା ନିର୍ଦ୍ଦୋଷ କାରଣ ସେ ଲୁଣ ମାରିବା କେହି ଦେଖି ନାହାନ୍ତି, ସେ ଅସୁସ୍ଥହେବାରୁ ଲୁଣ ମାରିପାରିବା ସମ୍ଭବନୁହେଁ, ପୂର୍ବରୁ ବରାମଦ ହୋଇଥିବା ଲୁଣିଆମାଟି, ସମୁଦ୍ରଜଳ ପାଇଁ ଲୁଣିଆଲାଗୁନି, ସ୍ତ୍ରୀମାନଙ୍କ ପରିସ୍ରା କରିବା ଏହାର ପ୍ରଧାନ କାରଣ । ରାମା ଅଭିଯୋଗ ମୁକ୍ତ ହୋଇଥିଲା ।

**ଅଶ୍ୱିନୀ କୁମାର** - (ପ୍ରାୟଶ୍ଚିତ୍ତ) ରାଜବୈଦ୍ୟ । ପୁତ୍ରର ଅପ୍ରତ୍ୟାଶିତ ବିବାହ ସମ୍ବାଦରେ ଶଯ୍ୟାଶାୟୀ ଦଶଗ୍ରାମୀ ଜମିଦାର ବୈଷ୍ଣବଚରଣଙ୍କ ପତ୍ନୀଙ୍କ ନାଡିଦେଖି ସନ୍ନିପାତ ବୋଲି ଜଣାଇଥିଲେ ।

**ଆର୍ତ୍ତତ୍ରାଣ କବି ଶିରୋମଣି** - (ମାମୁଁ) ପଣ୍ଡିତ ସଭାରେ ଉପସ୍ଥିତ ବାଲେଶ୍ୱର ଟୋଳର ଜନୈକ ପଣ୍ଡିତ । ଉତ୍ତରରାୟଂକ ମୃତ୍ୟୁରେ ଯେଉଁ ପଣ୍ଡିତସଭା ହୋଇଥିଲା ତାର ସଭାପତିଙ୍କ ନାମ ପସ୍ତାବ କରିଥିଲେ ।

**ଆନନ୍ଦ ମିଶ୍ର** - (ଅଧର୍ମ ବିତ୍ତ) ବିଜେ ନରହରିପୁର ଶାସନର ଶାସନୀ ବ୍ରାହ୍ମଣ । କୁବେର ସାହୁର ଶୋଷଣ ବିରୋଧରେ ଡକାଯାଇଥିବା ବ୍ରାହ୍ମଣସଭାରେ ଉପସ୍ଥିତ ଥାଇ ସାହୁ ବିରୁଦ୍ଧରେ ମତାମତ ଦେଇଥିଲେ ।

**ଆପୁଡ** - (ମାମୁଁ) ଜନୈକ ତେଲେଙ୍ଗା ଧୋବା ଟୋକା । ଏହାକୁ ପ୍ରଭୁଦୟାଲ 'ବଙ୍ଗଳା ଖରିଦ' ପରିଚ୍ଛେଦରେ ମଦ ଓ ଅନ୍ୟାନ୍ୟ ଦ୍ରବ୍ୟ ଆଣିବାକୁ ଟଙ୍କା ଦେଇଚି । ରାଘବ ଉପରେ ଯେ ବାନ୍ତିକରି ପଡ଼ିଯାଇଥିଲା । ଯେ ମଧ ମଦ୍ୟପାନ ଉତ୍ତାରୁ ରାଘବକୁ ମାଲପା ମାଲିସ କରିଦେଇଥିଲା ।

**ଆଲିବର୍ଦ୍ଦି ଖାଁ** - (ଲଛମା) ବଙ୍ଗ-ବିହାର-ଓଡିଶା ସୁବାର ଅଧିପତି । ଲଛମାର ତୃତୀୟ ପରିଚ୍ଛେଦ 'ସୁବାଦାର ଆଲବର୍ଦ୍ଦି ଖାଁ' ଏହି ଶୀର୍ଷକରେ ରଚିତ । ଏଥିରୁ ଏ ଚରିତ୍ରର ଗୁରୁତ୍ୱ ସ୍ୱୀକୃତ । ଯେ ଥିଲେ ରାଜନୀତି ପ୍ରବୀଣ ଓ ଧୈର୍ଯ୍ୟଶୀଳ । ବାଲେଶ୍ୱର ବନ୍ଦରରେ ଭାସ୍କର ପଣ୍ଡିତଙ୍କ ଆଧିପତ୍ୟ କଥା ଜାଣି ନିଜେ ମୁର୍ଶିଦାବାଦରୁ ଫୌଜକୁଚ୍ କରିଥିଲେ । ସିରାଜଉଦ୍ଦୌଲାଙ୍କ ଯାତ୍ରାର ବିସ୍ତୃତ ବିବରଣୀ ଉପନ୍ୟାସରେ ପ୍ରଦତ୍ତ । ତାଙ୍କର ଥିଲା ଏକପତ୍ନୀ ବ୍ରତ ।

**ଇନ୍ଦୁମତୀ** - (ପ୍ରାୟଶ୍ଚିତ୍ତ) ଉପନ୍ୟାସର ନାୟିକା । ସଙ୍କର୍ଷଣ ମହାନ୍ତିଙ୍କ ଏକମାତ୍ର ସନ୍ତାନ । ଝିଅଚାଟଶାଳୀରୁ ଶିକ୍ଷାପ୍ରାପ୍ତ । ମା'ଙ୍କ ମୃତ୍ୟୁପରେ ବହିଖଣ୍ଡେ ଧରି ବସିରହିବା ତାର ଅଭ୍ୟାସ ଥିଲା । ମରୁଆ ବ୍ୟତୀତ ଅନ୍ୟ ପୋଇଲୀଙ୍କ ସହ ବେଶି ମିଶୁନଥିଲେ । ଧନ ଓ ପରିଜନଂକ ବିପୁଳତା ସତ୍ତ୍ୱେ ସେ ଥିଲା ନିଃସଙ୍ଗ । ବିବାହ ପରେ ରାଜୀବଲୋଚନ ଓ ବାପାଙ୍କ ଚାପରେ

ପଡି ଗୋବିନ୍ଦଙ୍କୁ ଆସିବାପାଇଁ ଲେଖା ଏକ ପତ୍ର - କବିତାରେ ନିଜର ସ୍ୱାକ୍ଷର କରିଛି ଯଥେଷ୍ଟ ମନସ୍ତାପ ଓ ଧର୍ମସଙ୍କଟ ମଧ୍ୟରେ । ଏଥିରୁ ଏହାର ଅନ୍ତର୍ନିହିତ ସଦ୍‌ଗୁଣର ପରିଚୟ ମିଳେ । ଗୋବିନ୍ଦର ମାଡ ପରେ ସେ ଘୋର ବିଷାଦିତ ହୋଇପଡିଥିଲା, ନିଜକୁ ଏହାର କାରଣ ଭାବିଥିଲା ଓ ଆତ୍ମହତ୍ୟା କରିଥିଲା । ଚରିତ୍ରଟିର ପ୍ରତ୍ୟକ୍ଷ ଭୂମିକା ଉପନ୍ୟାସରେ ଗୌଣ । ପରୋକ୍ଷ ଭୂମିକା ହିଁ ଗୁରୁତ୍ୱପୂର୍ଣ୍ଣ ।

**କଉଶୁଲୀ ବୁଢୀଦାଈ** - (ପ୍ରାୟଶ୍ଚିତ୍ତ) ଗୋବିନ୍ଦଙ୍କ ଯାତ୍ରାକାଳୀନ 'ଦହିମାଛ' ଦେଖିବାକୁ ଆସି ପାଟକୋଷୀ ବୈଷ୍ଣବଙ୍କୁ ଯାତ୍ରାର ମୁହୂର୍ତ୍ତ ଅଶୁଭ କହିବାଟା ଶୁଣି ଗୋବିନ୍ଦ ମା'ଙ୍କୁ ଜଣାଇଛି ।

**କତଲୁ ଖାଁ** - (ଲଛମା) ବାଲେଶ୍ୱର ବନ୍ଦରରେ ନିଯୁକ୍ତ ମୋଗଲ ଫଉଜଦାର । ମରହଟ୍ଟା କର୍ତ୍ତୃକ ପରାସ୍ତ ହୋଇ କେନ୍ଦୁଝର ବଣରେ ଲୁଚିଥିବାକଥା ବାଲେଶ୍ୱରରେ ମରହଟ୍ଟା ପାଧାନ୍ୟ ଛଳରେ ବର୍ଣ୍ଣିତ ।

**କମଳଲୋଚନ ଦାସ** - (ପ୍ରାୟଶ୍ଚିତ୍ତ) ଜଣେ ଦରିଦ୍ର ଛାତ୍ର; ରାଜୀବଲୋଚନର ଭୋଜିସଭାରେ ଯେ ନିଜ ପ୍ରବନ୍ଧ 'ଯୌନନିର୍ବାଚନ' ପାଠକରିଥିଲେ । ଏହି ପ୍ରବଂଧର ଗୁରୁତ୍ୱ ଉପନ୍ୟାସରେ ଖୁବ୍‌ବେଶୀ । ଏହି ପ୍ରବଂଧ ଗୋବିନ୍ଦଙ୍କୁ ସ୍ୱାଧୀନଭାବେ ଜୀବନସଙ୍ଗିନୀ ନିର୍ବାଚନପାଇଁ ଉତ୍ସାହ ଯୋଗାଇଥିଲା । ରାଜୀବଲୋଚନଦ୍ୱାରା ନିଯୁକ୍ତ ହୋଇ ସେ ଉଦ୍ଦେଶ୍ୟମୂଳକ ଭାବେ ଏ ପ୍ରବଂଧ ଲେଖିଥିଲେ ।

**କମଳଲୋଚନ ନାୟକ** - (କମଳା ପ୍ରସାଦ ଗୋରାପ) ଜ୍ୟୋତିଷ ବାବୁ ରାମହରି ନାୟକଙ୍କର ସମସ୍ତ କାର୍ଯ୍ୟାରମ୍ଭ କାଳରେ ଗଣନା କରି ଶୁଭ ମୁହୂର୍ତ୍ତ ନିର୍ଦ୍ଧାରଣ କରିଥାନ୍ତି । କମଳା ପ୍ରସାଦର କଳ୍ପିତ ଦୁର୍ଘଟଣା ପୂର୍ବରୁ, ଯାତ୍ରାରମ୍ଭ ମୁହୂର୍ତ୍ତ ମଧ୍ୟ ଇଏ ଗଣନା କରିଥିଲେ । ଶେଷରେ ଗଣନାର ସତ୍ୟତା ପାଇଁ ରାମହରି ବାବୁଙ୍କଠାରୁ ପଟଯଥା ଓ ସୁନାବଳା ଲାଭ କଲେ ।

**କମଳଲୋଚନ ପଟ୍ଟନାୟକ** - (ପାଠୋଈ ବୋହୂ) ମୁକ୍ତାର ଗୋପାଳଚରଣ ପଟ୍ଟନାୟକଙ୍କ ବାପା । କାକୁଡିଆରେ ଗୁମାସ୍ତା ଥିଲେ । ଦରମା ଚାଳିଶ ଟଂକା ।

**କମଳା ଦେଈ** - (ସୁନାବୋହୂ) ନବଘନବାବୁଙ୍କ ଭାର୍ଯ୍ୟା । ବାନ୍ଧବୀ ବିମଳାଦେଈଙ୍କ ସହ ଦୋଳପୂର୍ଣ୍ଣମୀ ଦିନ ଆମ୍ବଡାଳ ବସିଥିଲେ ଓ ଝିଅହେଲେ ଆପଣାପୁଅ ଦିବୁ ବା ଦିବାକର ସହ ବିବାହ କରାଇବା ସତ୍ୟ କରିଥିଲେ ।

**କମଳା ସାହୁଆଣୀ** - (ଅଧର୍ମବିତ୍ତ) ମକ୍ରାମପୁରର ମହାଜନ କୁବେର ସାହୁର ସ୍ତ୍ରୀ ପତିପରାୟଣା, ଦୟାବତୀ, ପରୋପକାରୀ ମହିଳା । ଅନେକାଂଶରେ 'ଛ ମାଣ ଆଠଗୁଣ୍ଠ'ର ମଙ୍ଗରାଜ ପତ୍ନୀ ସାଆନ୍ତାଣୀ ସୁଲଭ ଏହାଂକ ସ୍ୱଭାବ । ସାହୁ ପରସ୍ତ୍ରୀ ହରଣ କରେ ଓ

ସାହୁଆଣୀ ପୁଅସହ ମିଶି ଗୋପନରେ ସର୍ବନାଶ ହୋଇଥିବା ବ୍ୟକ୍ତିକୁ ଯଦ୍‌ପରୋନାସ୍ତି ସାହାଯ୍ୟ କରନ୍ତି। ସାହୁ ଅନ୍ୟର ସର୍ବନାଶ କଲାବେଳେ ସାଆନ୍ତାଣୀ ସାହୁ ଗୋଡ଼ତଳେ ପଡ଼ି ତାଂକୁ କୁକାର୍ଯ୍ୟରୁ ନିବୃତ୍ତ କରାଇବାକୁ ଚେଷ୍ଟାକରନ୍ତି । ପୁତ୍ର ବିଦ୍ୟାଧରର ବିବାହ ଉପଲକ୍ଷେ ସାହୁ ଖାତକଙ୍କ ଠାରୁ ତମସୁକ ଲେଖାଇ ନେବା, କଟାଳକରି ଋଣ ଆଦାୟ କରିବା ଇତ୍ୟାଦି କାମରେ ନିୟୋଜିତ କାହାକୁ କଷ୍ଟ ନ ଦେବାକୁ କରଣମାନଙ୍କୁ ଇଏ ତାଗିଦା କରିଦିଅନ୍ତି । ଆବଶ୍ୟକ ସ୍ଥଳେ ଅନ୍ୟପାଇଁ ନିଜେ ଟଂକା ଗଣି ଦିଅନ୍ତି । ବାପା ନିର୍ବଂଶ ଥିବାରୁ ଇଏ ବାପାଙ୍କର ସବୁ ସମ୍ପତ୍ତି ଲାଭ କରିଛନ୍ତି ଓ ନିବିଂଶିଆ ଧନକୁ ଦାନପୁଣ୍ୟରେ ଖରଚ କରିବାକୁ ଇଚ୍ଛା କରିଛନ୍ତି । ସାହୁଆଣୀ ପୁତ୍ରର ବିବାହବେଳେ ଅସୁସ୍ଥ ହୋଇପଡିଛନ୍ତି ଓ ରାଜଯକ୍ଷ୍ମାରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କରିଛନ୍ତି ।

**କମଳି** - (ବିରେଇ ବିଶାଳ) ପାଣ୍ଡେଇ ପାତ୍ର ଓରଫ ରାଘବ ପାତ୍ରର ଝିଅ । ଗପର ମୁଖ୍ୟନାରୀ ଚରିତ୍ର ଓ ମୁଖ୍ୟ ପୁରୁଷ ଚରିତ୍ର ବିରେଇ ବିଶାଳର ସ୍ତ୍ରୀ । ବାପର ସାନଝିଅ । ଦେଖିବାକୁ ଡଉଲ, ଲାଜକୁଳୀ, ପରିଶ୍ରମୀ, ସୁଗୁଣ ସମ୍ପନ୍ନା । ମହିଳାଂକ ପ୍ରଶଂସା ପାତ୍ରୀ । ଆବାଲ୍ୟ ବିରେଇ ସହ ମୁହଁ ଚାହାଁ ଚୁହିଁ । ବିରେଇ ବିଶାଳକୁ ଗଲା ଆସିଲା ବେଳେ କମଳି ପାଣିଆଣିବା ବାହାନାରେ ତାକୁ ଦେଖିଯାଏ ।

ବାପା ଝିଅକୁ ହଜାରେ ଟଂକାରେ ବିକିବା ମନୋବୃତ୍ତି ବୁଝି ଓ ବଡ଼ଭଉଣୀମାନଂକର ଦୋବେଇ ଷାଠିଏ ବରଷର ବୁଢ଼ାଂକ ସହ ବିବାହ ଓ ଅଚିରେ ବୈଧବ୍ୟ କରଣ ତାକୁ କାତର କରାଇଛି । ବିରେଇ ସହ ବିବାହ ବେଳେ ସୁଚିନ୍ତିତ ଭାବେ ଧନଲୋଭୀ ବାପକୁ ଯଥାଯୋଗ୍ୟ ଶାସ୍ତି ଦେଇ, ତାର ଟଂକାଥଳି ପେଟତଳେ ଢାକି ସ୍ୱାମୀ ଘରକୁ ଯାଇଛି । ସାତଶହ ଟଂକା ବିରେଇକୁ ଓ ତିନିଶହ ଟଂକା ବଡ଼ ଦୁଇ ବିଧବା ଭଉଣୀଙ୍କୁ ଫେରାଇଛି । ଯେ ଅତି ବୁଦ୍ଧିମତୀ ଓ ସଂସାର ନିପୁଣା ।

**କରୁଣା ବାରିକ** - (ମାମୁଁ) ନରୁବାବୁଂକ ସେବାକାରୀ । ନାଜରଙ୍କ ବସାରେ ରହେ ନରୁସହ । ନରୁର ହାଲଚାଲ ବୁଝେ । ତାଙ୍କୁ ଭାରି ଭଲ ପାଏ । କରୁଣା ଚତୁର ଓ ନରୁବାବୁର ଏକାନ୍ତ ଅନୁଗତ ଓ ବିଶ୍ୱସ୍ତ ।

**କାଶୀନାଥ ବିଦ୍ୟାନିଧି** - (ପ୍ରାୟଶ୍ଚିତ୍ତ) ଗୋବିନ୍ଦର ବିବାହବେଳେ ଏତେବାଣ ଫୁଟିଥିଲା ଯେ ତାହା ଭୂମିକଂପର ଭ୍ରମ ସୃଷ୍ଟିକରାଇଥିଲା । ବୈଷ୍ଣବଚରଣ ଏପରି ଧାରଣାର ବଶବର୍ତ୍ତୀହୋଇ ବାଣଫୁଟିବାର କାରଣ ଜାଣିବାକୁ ଏହାଙ୍କୁ ପ୍ରଶ୍ନ କରିଛନ୍ତି ।

**କାଦ ଓରଫ କାଦର ଖାଁ** - (ମାମୁଁ) ଜନୈକ କଂସେଇ । ବଙ୍ଗଳା ଖରିଦ ପରିଚ୍ଛେଦରେ ପ୍ରଭୁଦୟାଳର ସହଯୋଗୀ ।

**କିଣାଧମ ପ୍ରଧାନ** - (ବାଲେଶ୍ୱର ରାହାଜାନୀ) ଜଳେଶ୍ୱର ଥାନାର ମୁନ୍‌ସୀ ସବ୍ - ଇନ୍‌ସପେକ୍ଟର ରାଜକିଶୋର ଚୌଧୁରୀଙ୍କୁ ଚାରିଗାଁ ଡକାୟକ ମାମଲାରେ ସାହାଯ୍ୟ କରିଥିବାରୁ ଏହାଙ୍କ ନିଯୁକ୍ତି ହୋଇଥିଲା । ଏହାଙ୍କର କେବଳ ନାମୋଲ୍ଲେଖ ରହିଚି । ମୂଳଘଟଣାସ୍ରୋତ ସହ ଏହାଂକ ସଂପୃକ୍ତି ଅନ୍ୟ କୌଣସି ଭାବେ ବର୍ଣ୍ଣିତ ହୋଇନାହିଁ ।

**କିଣାରାମ ସିଂ**- (ପୂନର୍ମୂଷିକୋଭବ) କିଣା ବାରିକ ଓରଫ କିଣାରାମ ସିଂ ଗଳ୍ପର ନାୟକ । 'କିଣୁ ଆମ୍ଭମାନଙ୍କର ଏହି କାହାଣୀର ମୂଳପାଣ୍ଠି ।' ପେସ୍କାରଙ୍କ ଗାଁ ପିଲା ଭାବେ ଆସି ତାଂକ ଦୁଆରେ ରହିଥିଲେ । ପଞ୍ଚହତା ମର୍ଦ୍ଦ, ଧୂର୍ତ୍ତ । ପେସ୍କାରଂକ ଦୟାରୁ ଛ'ମାସ କଚେରୀରେ ଫଖାଟାଣି କିଛି ଦରମା ପାଏ, ଅନ୍ୟଆଡୁ ମଧ ଦି'ପଇସା ପାଇଥାଏ । ନିମକୀ ପୁଲିସରେ କନେଷ୍ଟବଲ ଭାବେ ନିଯୁକ୍ତି ପାଇ ସେ ହୋଇଥିଲା କିଣାରାମ ସିଂ । ମକ୍ରାମପୁର ଗାଁ ସମେତ ଚାରିଖଣ୍ଡି ଗାଁର କନେଷ୍ଟବଳ । ମଫସଲରେ ତାର ନାମହେଲା, କିଣାରାମ ଜମାଦାର । ଲୁଣଚୋର ଧରିବା ଥିଲା ତାର କାମ । ଯେ ଥିଲା ଅତ୍ୟନ୍ତ ଦୁର୍ନୀତିଗ୍ରସ୍ତ । ଏହାରି ଘରେ କାମ କରିବାକୁ ରାମା ଭଣ୍ଡାରୀ ମନା କରିଦେବାରୁ, ଯେ ପ୍ରତିଶୋଧ ନେଇ ତାକୁ ଗିରଫ କରିଚି ମାତ୍ର ଦୋଷ ସାବ୍ୟସ୍ତ ନହେବାରୁ ଅପମାନିତ ହୋଇଫେରିଚି । ଏହାର ଦୁର୍ନୀତିପରାୟଣତା ଯୋଗୁଁ ଗୋଇନ୍ଦା ପୁଲିସ୍‌ଙ୍କ ଦ୍ୱାରା ଗିରଫ ଓ ଦୁଇମାସର କାରାଦଣ୍ଡାଦେଶ ତଥା କୋଡ଼ିଏ ଟଂକା ଜୋରିମାନା ସହ୍ୟକରିଥିଲା । କାରାଦଣ୍ଡ ପରେ ଗାଁରେ ବାଛନ୍ଦ ହେଲା ଓ ପୁଣି ପ୍ରାୟଶ୍ଚିତ୍ତ କରି ଲୋକଙ୍କ ଘରେ ଖଟି ଚଳିଲା ।

**କୁବେର ସାହୁ** - (ଅଧର୍ମବିତ୍ତ) ଘର ମକ୍ରାମପୁର, ବିଜେ ନରହରିପୁରଠାରୁ ଦେଢ଼କୋଶ ଦୂର ନଈକୂଳରେ । ଇଏ ସୁଧଖୋର ଭୀମା ମହାଜନ ଘରେ କାରବାରିଆ ଥିଲେ ଓ ଭୀମା ମଲାପରେ ଚାକର - ବାକର, ଓକିଲ - ମୁକ୍ତାରଙ୍କୁ ହାତ କରି ନିଜକୁ ଭୀମାର ପୋଷ୍ୟପୁତ୍ର ବୋଲି ପ୍ରମାଣ ଦେଇ ମହାଜନ ହେଲେ । ଇଏ ଦିବାକର ଦ୍ୱିବେଦୀଙ୍କ ବାପାଙ୍କୁ ଏକଶତ ଟଂକା କରଜ ଦେଇଥିବା ସାହୁକାର । ଦିବାକର ଦ୍ୱୀବେଦୀଙ୍କ ପରିବାର ଏହାଙ୍କର କୁଳ ପୁରୋହିତ ପରିବାର । ଖଣ୍ଡ ମଣ୍ଡଳର ସର୍ଭିଙ୍କ ସମ୍ପତ୍ତିକୁ କଳେ ବଳେ କୌଶଳେ ନିଜର କରିଛନ୍ତି । ଦିବାକରଙ୍କ ଚାରି ପାଞ୍ଚ ହଜାର ଟଙ୍କାର ସମ୍ପତ୍ତିକୁ ସାତଶହ ଟଙ୍କାରେ ନିଲାମ କରି ନେଇଛନ୍ତି । ଇଏ ଅତିଶୟ କୁଚକ୍ରୀ ଓ ପରସ୍ୱଲୋଲୁପୀ । ସୋନପୁର ଠାରୁ ଦଶପଲ୍ଲାଯାଏଁ ଗଡ଼ଜାତ ମଝିରେ ଏହାଙ୍କର ପନ୍ଦରଟି ଗୋଦାମ । ଇଏ ବକଧାର୍ମିକ ଭେକଧାରି-ବୌଦ ଏଲାକାର ହରିହରପୁର ଗାଁର ଲକ୍ଷପତି ମହାଜନ ଯୁଧିଷ୍ଠିର ସାହୁର ସବୁ ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରିଣୀ କନ୍ୟା ପଦ୍ମାବତୀକୁ ବୋହୂକରି ଯୁଧିଷ୍ଠିରର ସମସ୍ତ ସମ୍ପତ୍ତି ହାତପୈଠ କରିବା ମତଲବରେ ନିଜର ଗଡ଼ଜାତ କୋଠି ତନଖି ନାଁରେ ସୋନପୁର ବାଟରେ ଯିବାବେଳେ ହରିପୁରଠାରେ ରାତି କଟାନ୍ତି ଓ ଜପ ତପର ବାହାନା

କରି ଯୁଧିଷ୍ଠିର ସାହୁର ମନ ଜୟ କରନ୍ତି । ଯୁଧିଷ୍ଠିର ଏହାଙ୍କର ଛଦ୍ମ ଧର୍ମାଚରଣରେ ଭୁଲିଯାଇ କୁବେର ପୁତ୍ର ବିଦ୍ୟାଧର ସହ ପଦ୍ମାବତୀର ବିବାହ ସ୍ଥିର କରନ୍ତି । ଅବଶେଷରେ ନୌକାବୁଡ଼ିରେ ଏହାଙ୍କର ସର୍ବନାଶ ଘଟେ ଓ ସମସ୍ତ ଅଧର୍ମବିତ୍ତ ସମୂଳେ ବିନାଶ ଯାଏ । ସେ ନିଜେ ମଧ ଅକାଳରେ ମୃତ୍ୟୁବରଣ କରନ୍ତି ।

**କେଳୁ ରଥେ** - (ଛମାଣ ଆଠଗୁଣ୍ଠ) ବାଘସିଂହ ବଂଶର ପୁରୋହିତ । ଏ ପରିବାର ଅଗ୍ନି ଦାହରେ ଉଚ୍ଛନ୍ନ ହୋଇ ତୋଟାରେ ବସିଥିବା ବେଳେ ଯେ ଆପଣା ଘରୁ ଗୁଡ଼, ଚୁଡ଼ା, ତୋରାଣି ଆଣି ପିଆଇ ସାନ୍ତ୍ୱନା କରିଥିଲେ । ସେ ମତ ଦେଇଥିଲେ ହିଙ୍ଗୁଳା ଠାକୁରାଣୀଙ୍କ କୋପହେତୁ ନିଆଁ ଲାଗିଚି ।

**କେଳେଇ ମିଶ୍ର** - (ମାମୁ) ଢେଙ୍କାନାଳର ପଣ୍ଡିତ । ଉତ୍ତର ରାୟଂକ ମୃତ୍ୟୁରେ ହୋଇଥିବା ପଣ୍ଡିତ ସଭାରେ ଇଏ ପ୍ରସ୍ତାବ କରିଥିଲେ ସଭାପତିଙ୍କ ମୁହଁରୁ ଶାସ୍ତ୍ରବ୍ୟାଖ୍ୟା ଶୁଣିବେ ।

**ଖତୁ ଚନ୍ଦ** - (ଛମାଣ ଆଠଗୁଣ୍ଠ) ପିଣ-ନିଣ ଚନ୍ଦ । ତନ୍ତୀ, ବୟସ ଅଠେଇଶ, ପେଶା-ଲୁଗାବୁଣା । ନେତ ସଂପର୍କରେ ଯେ ସାକ୍ଷ୍ୟ ଦେଇଚି । ଭଗିଆର ପଡୋଶୀ ଥିଲେ ।

**ଖୋଦା ବକ୍ସ - ୧** (ମାମୁ) ଜଏଣ୍ଟ ମାଜିଷ୍ଟ୍ରେଟ୍ ଜୋନ୍ସଙ୍କ ଚପରାସି । ଯେ ଦୁଇଥର ପଙ୍ଖା ଦଉଡ଼ିକୁ ଜୋର କରି ଟାଣିଦେଲାରୁ ପଂଖା ଦଉଡି ଛିଣ୍ଡି ଯାଇଥିଲା ।

**ଖୋଦା ବକ୍ସ - ୨** (ମାମୁ) ଜନୈକ ପିଆଦା । ମଫସଲର ଅସୁଲୀ ରୋଡ଼ସେସ୍ ଟଂକା ଧରି ଯେ ଆସିଥିଲା ଓ ନାଜରଂକ ଗଣନାରେ ଯାର ଟଂକା କମ୍ ପଡିଥିଲା, ଧର୍ମ ବିଶ୍ୱାସୀ ଓ ସରଳ । ଏ ପିଆଦା ନାଜରଂକଦ୍ୱାରା ସରକାରୀ ଟଂକା ତୋଷରଫ କରିଥିବା ଅଭିଯୁକ୍ତ ହୋଇଥିବାରୁ ଆଲ୍ଲାଂକୁ ଅଭିମାନରେ ଦୁଃଖ ଜଣାଇଥିଲା ।

**ଗଙ୍ଗା ବେହେରା** - (ମାମୁ) ଜଏଣ୍ଟ ମାଜିଷ୍ଟ୍ରେଟ୍ ଜୋନ୍ସଙ୍କ ପଙ୍ଖା ଟଣାଳୀ ।

**ଗଦାଧର ନନ୍ଦ** - (ମାମୁ) ପଣ୍ଡିତସଭାର ଜନୈକ ପଣ୍ଡିତ । ବ୍ରହ୍ମାଙ୍କ କେଉଁନାମ ମୁକ୍ତିପ୍ରଦ ଓ କେଉଁ ମତ ଶ୍ରେଷ୍ଠ ଜାଣିବାକୁ ଚାହିଁଛନ୍ତି ।

**ଗଣପତି** - (ଅଜାନାତିକଥା) ଅଜା ରାମଦ୍ୱିବେଦୀଙ୍କୁ 'ସାହିତ୍ୟ' (ଉତ୍କଳସାହିତ୍ୟ) ଓ ଗେଜେଟର ଖବର ମଧ୍ୟସ୍ଥ ବ୍ୟବଧାନ ସୂଚାଇ ସାହିତ୍ୟର ସାମାଜିକ ଚାହିଦା ସଂପର୍କରେ ଅବଗତ କରାଏ । ପରୋକ୍ଷରେ ସାହିତ୍ୟ ଓ ସମ୍ବାଦ ମଧ୍ୟସ୍ଥ ବ୍ୟବଧାନ ସୂଚିତ । ଚରିତ୍ରଟି ସମକାଳର ଚିନ୍ତା, ବିଜ୍ଞାନ ଭିତ୍ତିକ ଦୃଷ୍ଟିର ଅଧିକାରୀ ।

**ଗଣପତି ରାଓ** - (ଲଛମା) ମାନଧାତାଙ୍କ ବିଚାରକାଳରେ ମରହଟ୍ଟା ପକ୍ଷର ଓକିଲ । ଲଛମା ଉପନ୍ୟାସରେ ଏହାଙ୍କ ଭୂମିକା ନଗଣ୍ୟ ।

**ଗଣେଶ୍ୱର ଖଡିରତ୍ନ** - (ମାମୁ) ପାଟଜ୍ୟୋତିଷ । ନରୁ ମାଇନର ପାଶ୍ କରି ଉଚ୍ଚ ଶିକ୍ଷାପାଇଁ କଟକ ବାହାରିବା ଦିନ ଧରିଥିଲେ ଖଡିରତ୍ନେ ।

**ଗୁରୁବାରୀ** - (କମଳା ପ୍ରସାଦ ଗୋରାପ): ବାବୁରାମହରି ନାୟକଙ୍କ ଘର ପୋଢ଼ିଲି । ଗୋରାପ ବୁଡିଯାଇଥିବା ଖବରପାଇ ଚିନ୍ତାଗ୍ରସ୍ତ, ବିଷାଦଗ୍ରସ୍ତ ସାଆନ୍ତଙ୍କୁ ସାତାଣୀ ଭିତରୁ ଡାକୁଥିବା ଖବର ଦେଇଥିଲା ।

**ଗୁରୁବାରୀ** - (ବିରେଇ ବିଶାଳ) ପୀତେଇ ପାତ୍ରର ସ୍ତ୍ରୀ । ବିରେଇର ମାଇଁ । ବିରେଇକୁ ପାଳିବାର ଦାୟିତ୍ୱ ମାମୁ ପୀତେଇ ପାତ୍ର ମାଇଁ ଗୁରୁବାରୀ ଉପରେ ନ୍ୟସ୍ତ କରନ୍ତି । ଇଏ ସ୍ୱାର୍ଥପର । ଲୋକ ଦେଖାଣିଆରେ ବିରେଇକୁ ଆଦର କରନ୍ତି । ମାତ୍ର ବାସ୍ତବରେ ନିଜ ପୁଅ ପ୍ରତି ଦୁର୍ବଳ । ଯାଙ୍କ ମୁହଁପାଇଁ ପୁଅ ଚଣ୍ଡିଆ ଉପ୍ତାଟିଆ ହୋଇଛି । ଅବଧାନ ପୁଅକୁ ଶାସନ କଲେ ଗୁ ରୁବାରୀ ଅବଧାନର ଚଉଦ ପୁରୁଷକୁ ନରକଗାମୀ ହେବାର ଅଭିସମ୍ପାତ ଦେଇ ପୁଅର ପାଠପଢା ବନ୍ଦ କରିଛି । ସ୍ୱାମୀ ଏହାଂକୁ ଡରନ୍ତି । ଏହାଂକ ପ୍ରରୋଚନାରେ ମାମୁ ବିରେଇର ପାଠ ବନ୍ଦ କରି ଗାଈ ଜଗାକାମରେ ତାକୁ ନିୟୋଜିତ କରିଛନ୍ତି ।

ବିରେଇର ପ୍ରଶଂସା ଅସହିଷ୍ଣୁ । ମାଇଁ ନିଜପୁଅ ଚଣ୍ଡିଆର ମଦ, ଗଞ୍ଜେଇ, ବାଗୁଲି ଖେଳ, ଦାମୁଡ଼ି ବିକ୍ରୀ, ଧାନଚୋରୀ ସବୁ ଲୁଚାଏ । ପଛକୁ ପଛ ପୁଅକୁ ହାତଖର୍ଚ୍ଚ ଯୋଗାଇ ନ ପାରି ପୁଅଠୁ ମାଡ଼ ଖାଏ ।

ଶ୍ୱାସ ବେମାରୀ ହେତୁ ସଞ୍ଜବେଳେ ଆପୁଖାଏ । ଭଣଜା ବିରେଇ ଯିବା ପରେ ପୁଅ ଦ୍ୱାରା ଲାଞ୍ଛିତ ହୋଇ ବାପ ମାଆ ଉଭୟ ଦାଣ୍ଡରେ ବସନ୍ତି । ଶେଷରେ ବିରେଇଦ୍ୱାରା ଦୁହେଁ ଆଶ୍ରା ପାଆନ୍ତି ।

**ଗେହ୍ଲେଇ** - (ମାମୁ) ଏହାଙ୍କ ସଂପର୍କରେ ଲେଖକ ଖୁବ୍ ଉଦାର । ସମଗ୍ର ନବମ ପରିଚ୍ଛେଦଟି ଏହାଙ୍କ ନାମରେ ନାମିତ ଓ ଏହାର ପରିଚୟ ପ୍ରଦାନ ପୂର୍ବକ ଲିଖିତ । ସ୍ୱାମୀ ଘନ ବିଶ୍ୱାଳ, ଶାଶୁବୁଢ଼ୀ ଆଉ ଦେଢ଼ ବର୍ଷର ପୁଅ ଦିନ ତିନିଟାରେ ମରି ଯାଇଥିଲେ । ଗେହ୍ଲେଇ ଜଗତରେ ଏକଲା ହୋଇ ଯାଇଥିଲା । ବୃନ୍ଦାବତୀଙ୍କ ପ୍ରତି ତାରଥିଲା ଅଟଳ ନିଷ୍ଠା । ତାଂକରି ଭରସାରେ ସବୁ ମୁର୍ଦ୍ଦାର ଘୋଷାରି ଘୋଷାରି ସେ ମଶାଣିରେ ଫିଙ୍ଗିଥିଲା । ତାର ସାହସ ଏଇଥିରୁ କଳିହେବ । ଖାଲି ସେ ସାହସୀ ନଥିଲା, ଗେହ୍ଲେଇ ଥିଲା 'ମାଇକିନିଆ ପଲ୍ଲରେ ରସିକା ପୁରୁଷ ମହଲରେ ପାଷାଣୀ ଦୁଷ୍ଟଲୋକମାନଂକ ସାକ୍ଷାତରେ ସର୍ପିଣୀ ।' ଗେହ୍ଲେଇ ସ୍ୱନିର୍ଭରଶୀଳ । ଘରେ ତିନୋଟି ଗାଈ । ଦୁଧ ସବୁବେଳେ । ସେଇତକ ବିକିଚଳେ । ଘିଅ ଟିକେ ଟିକେ ମାରି ତାକୁ ବି ବିକେ । ଦୁଇମାଣ ଚାଷଜମି ବଖରାରେ ଲଗାଇ ଦେଇଥାଏ । ଭାରିପରିଚ୍ଛନ୍ନ । 'ଗେହ୍ଲେଇ ସୁନ୍ଦରୀ, ପୂର୍ଣ୍ଣ ଯୁବତୀ - ଯିମିତି ସିମିତି ସୁନ୍ଦରୀ ନୁହେଁ - ଶହ ପଚାଶରେ ଗୋଟିଏ । ଦେହ ଗଠଣଟା ଏମନ୍ତ ନିଖୁଣ ଯେ, ଅସହଣି ମାଇକିନିଆଟାଏ ଖୁଣ୍ଟି ପାରିବ ନାହିଁ । ତେଢ଼େ ଚମ୍ପାଫୁଲିଆ ଚହଟଗୋରୀ ନହେଉ ହେଲେ ତାକୁ ଗୋରୀ ବୋଲିବାକୁ ହେବ ।' ସେ ଧାଇ ପଣ ବି ଜାଣେ । ଭଲମନ୍ଦକୁ ସାହା ହୁଏ । ତାର

ଲୋକପ୍ରିୟତାର ଅନ୍ତ ନାହିଁ । ସେଇଥି ଲାଗି ସେ କାହାର ଅପା, ଧର୍ମ ଝିଅ, ଝିଆରି, ପିଉସୀ' କାହାର ବଉଳ ଆମ୍ବକଷି, କାହାର ବା ସଂଗାତ । ଦୋଷ ଭିତରେ କାହାରି ମିଛ ବଡ଼ିମା ସହିପାରି ନାହିଁ । ଯେଉଁ ଗୁରୁତ୍ୱ ପାଇ ଏ ଚରିତ୍ର ଉପନ୍ୟାସକୁ ପ୍ରବେଶ କରିଚି, ମନେହେବ ଏହା ମାଧ୍ୟମରେ ବିବିଧକାର୍ଯ୍ୟ ଔପନ୍ୟାସିକ କରିବେ ମାତ୍ର ଗେହ୍ଲେଇର ଉପନ୍ୟାସରେ ଭୂମିକା ଖୁବ୍ କମ୍ । ହୁଏତ ଉପନ୍ୟାସକୁ ଭିନ୍ନଭାବେ ଗତି କରାଇବାକୁ ମନସ୍ଥକରି ଔପନ୍ୟାସିକ ଏହାକୁ ଅପାଂକ୍ତେୟ କରିଦେଇଛନ୍ତି ।

**ଗୋକୁଳ ପଟ୍ଟନାୟକ** - (ମାମୁ) ଉତ୍ତରରାୟ ଜମିଦାରୀରେ 'କାର୍ଯ୍ୟ' ଭାବେ ଅବସ୍ଥାପିତ । ପୂର୍ବରୁ କୋଡ଼ିଏ ଟଙ୍କା ଦରମାରେ ରହୁଥିଲେ । ପରେ ନାଜର ଜମିଦାରୀ ଦେଖାଶୁଣା କରିବାରୁ ବେତନ ବଢାଇ ତିରିଶଟଙ୍କା କରିଦେଲେ ଓ ସର୍ତ୍ତ ରଖିଲେ ସେ ପାଞ୍ଚଟଙ୍କା ନଗଦପାଇ ତିରିଶଟଙ୍କାର ରସିଦ୍ ଲେଖିଦବ । ନିଜର ଭରଣପୋଷଣ ବାବଦ ସେ ଦଙ୍ଗାଫିସାଦ,ମାରପିଟ, ଭାଇଭାଗ, ନିରାଜା ତମସୁକି ମାମଲା ଏବଂ ଅନ୍ୟାନ୍ୟ ବହୁ ପନ୍ଥାରୁ ଅର୍ଥ ଆଦାୟ କରିବାପାଇଁ ନାଜରୀୟ ସ୍ୱୀକୃତି ପାଇଥିଲା ।

**ଗୋକୁଳି ବାବୁ** - (ଗାରୁଡ଼ିମନ୍ତ୍ର) ମଦନର ବନ୍ଧୁ । ଉପନ୍ୟାସ ପଢ଼ି ମଦନ ଭାବୁକ ହେଉଥିବା ବେଳେ, ଏପରି ଅବସ୍ଥାର କାରଣ ଯେ ପଚାରିଚି । ମଦନ ଉପନ୍ୟାସ ଅନୁରୂପ ନାୟିକାଟିଏ ଖୋଜୁଚି ବୋଲି କହି ଯେ ପରିହାସ କରିଚି ।

ଗୋପାଳ - (ଡାକ ମୁନ୍‌ସି) ଗଳ୍ପ ନାୟକ । ହରିସିଂହର ଏକମାତ୍ର ସନ୍ତାନ । ଆଠବର୍ଷ ବୟସ ଯାଏଁ ମାଆ ପାଖରେ ରହି ଗାଁରେ ଅପର ପ୍ରାଇମେରି ଯାଏଁ ପଢ଼ିଛି । ମାଆ ମଲାପରେ କଟକରେ ବାପ ପାଖରେ ରହି ମାଇନର୍ ପାଶ୍ କରିଛି । ବାପକୁ ସବୁବେଳେ କହିଛି, ଧାର କରଜ କରି ପଢ଼ାଅ ମୁଁ ଚାକିରି କରି ଶୁଝିବି ।

ବାପର ଚେଷ୍ଟା ଓ ପୋଷ୍ଟମାଷ୍ଟରଙ୍କ ଦୟାରୁ ମଫସଲ ମକ୍ରାମପୁରରେ ସବ୍ ପୋଷ୍ଟମାଷ୍ଟର ପଦରେ ନିଯୁକ୍ତି ପାଇଛି । ବେତନ ମାସକୁ କୋଡ଼ିଏ ଟଂକା । ପ୍ରଥମ ମାସ ଦରମା ବାପକୁ ଦେଇଛି ।

କ୍ରମେ ଅଫିସ୍‌ରେ ଆଉ ପାଞ୍ଚଜଣ ବାବୁଂକ ସହ ବସାଉଠା ଓ ଇଂରାଜୀରେ କଥାବାର୍ତ୍ତା କରିକରି 'ଡାକମୁନ୍‌ସୀ' ନାଁରେ ପରିଚିତ ହୋଇଛି । ଘରେ ଧୂଳିଆ ଲୁଗା ପିନ୍ଧା ବାପବୁଢ଼ା କ୍ରମଶଃ ଅସହ୍ୟବୋଧ ହୋଇଛି । ନିଜ ପଦବୀର ଅହଂକାର ହେତୁ ମୂର୍ଖ ବୁଢ଼ାକୁ ବାପବୋଲି ଡାକିବାକୁ ଲଜ୍ୟା କରିଛି । ବାପକୁ ହତାଦର କରିଛି । ନିଜର ଜିନିଷପତ୍ର ବୁହାଇଛି । ଶେଷରେ ନାନା ହତାଦର କରି ମାଡ଼ ଦେଇ ବାପକୁ ଘରୁ କାଢ଼ିଦେଇଛି ।

ଇଏ ସ୍ୱାର୍ଥପର, ଶିକ୍ଷିତ ନାଁରେ ଅଶିକ୍ଷିତ ବୁଢ଼ାବାପ ପ୍ରତି ଅବିଚାର କରି ନିଜର ଅମଣିଷପଣିଆର ପରିଚୟ ଦେଇଛି ।

**ଗୋପାଳ ଘଡ଼େଇ** - (ପୂନର୍ମୂଷିକୋଭବ) ମହ୍ମଦପୁର ଗାଁର ମାମଲତକାର । ରାମାବାରିକକୁ କନେଷ୍ଟବଲ୍ କିଣାରାମ ସିଂ ଖୁଣମରା ଅଭିଯୋଗରେ ଚାଲାଣ କରିବାରୁ ଚାନ୍ଦାଭେଦା କରି ଟଂକା ଧରି ତା'ପାଇଁ ଓକିଲ ଠିକ୍ କରିଥିଲା ।

**ଗୋପାଳଚରଣ ପଟ୍ଟନାୟକ** - (ପାଠୋଇ ବୋହୂ) ମୁକ୍ତାର । ବୟସ ବାଇଶ, ତେଇଶ । ପାଞ୍ଚବର୍ଷ ବୟସରୁ ବାପ ଛେଉଣ୍ଡ । ମା' ଦ୍ୱାରା ମଣିଷ ହେଇଥିଲେ । ବୁଦ୍ଧିମାନ ଯୁବକ । ମା'ର ଦୁଃଖରେ ଦୁଃଖୀ । ରୋଜଗାର କଲେ ମା'କୁ ସୁଖରେ ରଖିବାକୁ ପ୍ରତିଜ୍ଞା କରିଥିଲେ । ବାଲେଶ୍ୱରରେ ଚାକିରି ପରେ ମା'କୁ ଆଣି ଯତ୍ନରେ ରଖିଥିଲେ । ପାଠୋଇ ବୋହୂଟିଏ ବିଭା ହେବାର ଇଚ୍ଛାଥିଲା, ଯାହାକୁ କି ବାହାକଲେ ସେ ନିରକ୍ଷରା, ନାଁ ସରସ୍ୱତୀ । ବିବାହର ପନ୍ଦର ଦିନ ପରେ ମାତୃ ବିୟୋଗ । ସ୍ତ୍ରୀକୁ ପାଠ ପଢାଇବାକୁ ପ୍ରଯତ୍ନ କରିବାର୍ଥେ ଓ ସମୟ ବିତାଇବାକୁ ରାଧେବାବା ମଠରେ 'ଭକ୍ତି ଦାୟିନୀ ସଭା' ରେ ଯୋଗଦାନ । ସ୍ତ୍ରୀର ମୂର୍ଖତା ପାଇଁ ଲଜ୍ଜ୍ୟାକର ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି ।

**ଗୋପାଳ ରଥ**- (ମାମୁ) ଚାନ୍ଦମଣି ଓ ପ୍ରତାପଂକ ମଙ୍ଗଳ କୃତ୍ୟ ସଂପର୍କରେ ଟିପ୍ପଣୀ ଦେଇ ନାଶ ଶୁଂଘୁ ଶୁଂଘୁ ରଥେ କେବଳ କହିଥିଲେ, 'ରତ୍ନମ୍ ସମାଗଛତୁ କାଞ୍ଚନେନ' ।

**ଗୋପାଳିଆ** - (ସଭ୍ୟ ଜମିଦାର) ଗୋପାଳିଆ ଓରଫ ଗୋପାଳ ଓରଫ ସାନବାବୁ ଓରଫ ବାବୁଗୋପାଳ ଚନ୍ଦ୍ର ମହାପାତ୍ର ଭାବେ ପରିଚିତ । ବଳରାମ ବଳଙ୍କ ଗାଁ ପିଲେ । ଛେଉଣ୍ଡ ଜାତିପୁଅ, ତେଣୁ ଦୟାକରି ମହାଜନ ସାଙ୍ଗରେ କଲିକତା ନେଇ ଯାଇ ଆଶ୍ରା ଦେଇଥିଲେ । ସେ ଖୁବ୍ ବିଶ୍ୱାସୀ । ମହାଜନଙ୍କ ହଜିଥିବା ଆକବରୀ ମୋହର ପୁନଶ୍ଚ ତାଙ୍କ ହାତରେ ଦେଇ ବିଶ୍ୱାସର ପାତ୍ର ହୋଇପାରିଥିଲା । ମହାଜନଙ୍କ ସମସ୍ତ ନିଜ କାମ କରିଦିଏ । ବାବୁ ଖୁସିହୋଇ ତା'ପାଇଁ ଗାଁରେ ଘର କରିଦେଇଥିଲେ ଓ ତାକୁ ବିଭା କରାଇ ଦେଇଥିଲେ । ଗୋପାଳ କର୍ମଠ' ବ୍ୟାପାରରେ କ୍ରମେ ପାରଙ୍ଗମ ହୋଇ ବାବୁଙ୍କ ଡାହାଣ ହାତ ହୋଇଥିଲେ ସାନବାବୁ ବା ବାବୁ ଗୋପାଳଚନ୍ଦ୍ର ମହାପାତ୍ର ନାମରେ ପରିଚିତ ହୋଇଥିଲେ । ସମୟ କ୍ରମେ ଚାକରରୁ ମହାଜନଙ୍କ ଲାଭର 'ଚାରିପଣି ଅଂଶଭାଗୀ' ହେଇ ଲକ୍ଷପତି ହୋଇଥିଲେ । ମହାଜଂନ ତା'ପାଇଁ ଗାଁରେ ଦିମହଲା ଘର ଓ ଖଣ୍ଡେ ତାଲୁକ କିଣିଦେଇଥିଲେ । କାମରେ ଯେ ଆନନ୍ଦ ପାଏ ଓ ବଡଲୋକୀରେ ବିଚାର କରେନାହିଁ । ନିଜ ତାଲୁକର ବହୁ ଲୋକଙ୍କୁ କଲିକତାରେ ନାନାକାମରେ ଲଗାଇ ରୋଜଗାରୀ କରାଇଥିଲା ଓ ଢେର ପିଲାଂକୁ ଶିକ୍ଷିତ ହେବାରେ ସାହାଯ୍ୟ କରିଥିଲା । ଏହାର ଏକମାତ୍ର ସଂତାନ ରାଜୀବ ଲୋଚନକୁ ଶିକ୍ଷିତ କରାଇବାର ଦୂରନ୍ତ ପ୍ରଚେଷ୍ଟା ସତ୍ତ୍ୱେ ସେ ଥିଲା ଅତିଶୟ ଧୂର୍ତ୍ତ, ଦୁର୍ଜନ ଓ ଶିକ୍ଷାବିମୁଖ । ଅକସ୍ମାତ ସନ୍ନିପାତରେ ଏହାଙ୍କ 'ଗଙ୍ଗାଲାଭ' ହୋଇଥିଲା ।

**ଗୋପିଆ ତନ୍ତୀ** - (ଛମାଣ ଆଠଗୁଣ୍ଠ) ଜଣେ ସୁଖ୍ୟାତ ଗ୍ରାମ୍ୟ କବିରାଜ । ଶିବା ଚମାର ଓ କାର୍ତ୍ତିକ ନାୟକ ବୋଲି ଦୁଇଜଣ କବିରାଜ ଜବାବ୍ ଦେଇ ଦେବା ପରେ ମଂଗରାଜଙ୍କ ଶେଷ ଜୀବନରେ ଯେ ତାଂକର ଚିକିତ୍ସା କରୁଥିଲେ । ଏହାଙ୍କ ବିଦ୍ୟାବୁଦ୍ଧିର ବିଶେଷ ଦୃଷ୍ଟାନ୍ତ ଏପରି ପ୍ରଦତ୍ତ - ମେଘଦୂତର ଶ୍ଳୋକ ଆୟୁର୍ବେଦ ଶାସ୍ତ୍ରର ଶ୍ଳୋକ ଭାବେ ସେ ଚଳାଇ ନେଇପାରୁଥିଲେ ।

**ଗୋପୀ ବାବୁ** - (ପେଟେଣ୍ଟମେଡ଼ିସିନ୍) ଜଣେ ମସ୍କରିଆ ଲୋକ । ଚନ୍ଦ୍ରମଣିଙ୍କ ଅଚାନକ ଏପରି ଚାରିତ୍ରିକ ପରିବର୍ତ୍ତନର ରହସ୍ୟ ଉଦ୍‌ଘାଟନ କରି ମନ୍ତବ୍ୟ ଦେଇଥିଲେ, 'ସାନ୍ତାଣୀ ଯେ ଅର୍ଦ୍ଧାଳିଆ ଝାଞ୍ଜୁଣୀ ବୃଷ୍ଟି କରିଥିଲେ, ଏଇଟା ତାହାରି ଫଳ । ନିଶା, ବଦଖିଆଲି ଯେତେ ଉତ୍କଟ ରୋଗ, ଝାଞ୍ଜୁଣୀ ପ୍ରହାର ଔଷଧରେ ସବୁ ଛାଡେ ।' ପୁଣି କହିଛନ୍ତି, 'ଏଇଟା ସାନ୍ତାଣୀଙ୍କ ଆବିଷ୍କାର - ପେଟେଣ୍ଟମେଡ଼ିସିନ'।

**ଗୋପୀ ସାହୁ** - (ଛମାଣ ଆଠଗୁଣ୍ଠ) ବିରୂପା ନଦୀକୂଳ ଗୋପାଳପୁର ଘାଟି । ତୁଠ ଉପର ବଡ଼ଭାରି ବରଗଛ ମୂଳରେ ଗୋପୀ ସାହୁର ଦୋକାନଘର । ବାଟୋଇ ଆସିଲେ ସେଇଘରେ ରହନ୍ତି, ରୋଷେଇ ସରଞ୍ଜାମ ସାହୁ ଯୋଗାଇଦିଏ । ବିଲବାଡ଼ି କାମକୁ ନପାରିଲାରୁ ପୁଅମାନଙ୍କ ସାହାଯ୍ୟରେ ଦୋକାନଟି କରିଥିଲା । ଉଦ୍ୟୋଗୀ ଲୋକ । ଖାଲିଘରେ ବସିନପାରି ଦୋକାନ ଚଳାଇଥିଲେ । ଦିନ ପହରକ ବେଳେ ଆସେ ସଂଜବେଳେ ଦୋକାନଘର ବଂଦକରି ଚାଲିଯାଏ । ଦୋକାନଠୁ ଘର ଅଧକୋଶ ଦୂର । ସଂଜରେ ସୋରିଷେ ସୋରିଷେ ଆପୁ ଖାଏ । ସେ ଅଂଧାରକଣା । ତାରି ଦୋକାନରେ ଗୋଟିଏ ସଂଧ୍ୟାରେ ଚମ୍ପା ଓ ଗୋବିନ୍ଦା ଆସି ରହିଥିଲେ ଓ ମନାନ୍ତର ଘଟି ଗୋବିନ୍ଦା ସେଇଠି ଚମ୍ପାକୁ ରାତିରେ ହତ୍ୟା କରିଥିଲା । ଗୋପୀ ସାହୁ ଜମାଦାରଙ୍କ ଆଗରେ ସେ ଛ'ମାସ ହେବ ବାଧିକିରେ ପଡିଥିବା ସାକ୍ଷ୍ୟ ଦେଇଥିଲା ଓ ଏ ଘଟଣା ସଂପର୍କରେ ଆପଣାର ଅଜ୍ଞତା ପ୍ରକଟ କରିଥିଲା ।

**ଗୋପି ସିଂହ** - (ଛମାଣ ଆଠଗୁଣ୍ଠ) ହାଜତର ସିପାହୀ । ମଂଗରାଜ ବିକଳହୋଇ ଏ ବିପଦରୁ ମୁକ୍ତ କରିଦେଲେ ହଜାରେ ଟଂକା ଦେବେ ବୋଲି ଓକିଲ ରାମରାମ ଲାଲାଙ୍କୁ କହିଲାବେଳେ, ଏଠି ଧାରଉଧାର ଚଳେନାହିଁ ବୋଲି ମନ୍ତବ୍ୟ ଦେଇଛି ଏ ସିପାହୀ । ଫଳତଃ ମଂଗରାଜଂକ ଅସହାୟତା ବଢ଼ିଛି ଓ ସ୍ଥିତି ହୋଇଛି ଜଟିଳ ।

**ଗୋବରା ଜେନା** - (ଛମାଣ ଆଠଗୁଣ୍ଠ) ଭଲନାମ ଗୋବର୍ଦ୍ଧନ ଜେନା । ଗୋବିନ୍ଦପୁର ମୌଜା ଡମ ସାହିରେ ଦଶଘର ଡମଂକ ସହ ଗୋବରା ଜେନାର ଘର । ସେ ଚୌକିଦାର । ଦେଢ଼ମାଣ ଜାୟଗିରି ଜମିଦାର ଥିଲା । ଏହାବାଦ ସେ ଧାନକଟା ସମୟରେ ଗୋଟାଏ ଲେଖାଏଁ ହଳା, ବାହାପୁଆଣିରେ ଖଦିମୂର୍ତିଏ, ବରଠାରୁ ଚୌକିଆ ରୋସମ ଟଙ୍କାଟିଏ, ମରୁଡ଼ିଆଦିରେ ଭାତିଆ ବାବଦକୁ ଖର୍ଚ୍ଚନିଏ । ଚୋରୀ, ସାପକାମୁଡ଼ା, ଜଳବୁଡିରେ ପୁଲିସ

ଏତଲା ଖର୍ଚ୍ଚ ଟଂକାଟିଏ । ରାତି ଓଳି ସେ କାହାରି ନା କାହାରି ଘରେ ଖାଏ । ଗରିବ ଗୁରୁବାର କାମ କଂସା, ଢାଳଟିଏ ନେଇ ଚଳାଇଦିଏ । ଗୋବରାର ସମସ୍ତ ଆଚାର -ସଂହିତାରେ ତାର ବଞ୍ଚନା ପ୍ରତି ଚମତ୍କାର ବ୍ୟଂଗ ଉପଲଭ୍ୟ । ତାର ଆର୍ଥିକ ସ୍ୱାଚ୍ଛଲ୍ୟର ସୂଚନା - 'ଗୋଟିଏ ଚୋରୀମାମଲାରେ ଅଢେଇଟଂକା ମୁନ୍‌ସିକୁ ପେଲିଦେଇ ଖଲାସ ପାଇଲେ'। ଚୌର୍ଯ୍ୟବୃତ୍ତି ସହ ତାର ଘନିଷ୍ଠ ସଂପର୍କ ମଧ ନାନାଭାବେ ସୂଚିତ । ଏଇ ସୂତ୍ରରେ ମଙ୍ଗରାଜଙ୍କ ସହ ଗୋବରାର ଥାଏ ଘନିଷ୍ଠତା । ମଙ୍ଗରାଜଙ୍କ ଚରିତ୍ରର ଅନ୍ୟଏକ ତାତ୍ପର୍ଯ୍ୟ ପୂର୍ବ ଦିଗକୁ ଦ୍ୟୋତିତ କରାନ୍ତି ଫକୀରମୋହନ ଏହାରି ମାଧମରେ । ଗୋବରା ଜେନାର ଚାତୁରୀ ସଂପର୍କରେ ମଙ୍ଗରାଜ ପ୍ରଶଂସା ମୁଖର । ଅଥଚ ସେହି ଗୋବରା କଲା ମଙ୍ଗରାଜଙ୍କ ବିରୁଦ୍ଧାଚରଣ । ଦାରୋଗାଙ୍କୁ ସାରିଆର ମୃତ୍ୟୁ ସଂବାଦ ଦେଇ ସାକ୍ଷ୍ୟ ବେଳେ କହିଚି ସାରିଆର 'ମାରିପକାଇଲା' 'ମାରିପକାଇଲା' ହୁରି ଶୁଣିଚି । ମାତ୍ର ଜର୍ଜ ଡଗଲସ ତାକୁ ମିଥ୍ୟା ସାକ୍ଷ୍ୟ ଅଭିଯୋଗରେ ବର୍ଷେ କାରାବାସର ଆଦେଶ ଦେଇଥିଲେ । କାରାଗୃହରେ ରତନପୁର ମୌଜାର ଡମମାନଙ୍କଦ୍ୱାରା ମାଡ଼ଖାଇ ତାର ମୃତ୍ୟୁ ଘଟିଥିଲା ।

ଗୋବିନ୍ଦ ଚନ୍ଦ୍ର - (ଛମାଣ ଆଠଗୁଣ୍ଠ) ଭଗିଆର ବାପା । ଜାତିରେ ତନ୍ତୀ । ତନ୍ତୀମାନଙ୍କର ଇଏ ଥିଲା ପରମାଣିକ ଅର୍ଥାତ ମୁଖିଆ । ଗାଁରେ ସେ ଥିଲା ଜଣେ 'ସେରେନ୍ତା ଲୋକ' । ଆଖପାଖ ଗାଁ ପଞ୍ଚୁଆତି ବା ଅନ୍ୟ ମାମଲାକୁ ଗୋବିନ୍ଦକୁ ଖୋଜା ହଉଥିଲା । ନିଜେ ଲୁଗା ବୁଣୁ ନ ଥିଲା ମାତ୍ର ଲୁଗା ନେଇ ହାଟରେ ବିକୁଥିଲା ବା ମହାଜନପାଖକୁ ଲୁଗା ପଠାଇ ଦଉଥିଲା ବେଶ୍ ଦି ପଇସା କରିଥିଲା । ବାଘସିଂହ ଜମିଦାର ବଂଶର ଗୌରବ ଅସ୍ତମିତ ହୋଇ ଆସିଲା ବେଳେ 'ଗୋବିନ୍ଦ ପୁର ଗାଁ ତଳେ ଚକେ ଗହୀର ଜମି ଛ'ମାଣ ଆଠଗୁଣ୍ଠ ବାହିଲି ନିଷର' ଗୋବିନ୍ଦ କିଣି ନେଇଥିଲା । ଏ ଜମି ସମଗ୍ର ଉପନ୍ୟାସର କେନ୍ଦ୍ରବିନ୍ଦୁ ପାଲଟିଚି । ଏହାଥିଲା ଅତ୍ୟନ୍ତ କଳିନ୍ଦ । ଏଠି ପୋତା ହେଲା ଉପନ୍ୟାସର ବୀଜ ଓ ଫକୀରମୋହନ ଏଥିରୁ ଅମଳ କଲେ ଆପଣାର ଅସରନ୍ତି ଯଶ ।

ଗୋବିନ୍ଦ ଚନ୍ଦ୍ର- (ପ୍ରାୟଶ୍ଚିତ୍ତ) ଶ୍ରୀକରଣ ଗୋଷ୍ଠିର ମଉଡ଼ମଣି ଜମିଦାର ବୈଷ୍ଣବଚରଣଙ୍କ ପୁତ୍ର । ଜଣେ ଶିକ୍ଷିତ ଯୁବକ । କାବ୍ୟକବିତା ରଚନାକାର ରୂପେ ମଧ ଖ୍ୟାତି ରହିଚି । ଜଣେ ଶାନ୍ତ ଓ ସରଳ ଯୁବକ ମାତ୍ର ପ୍ରଧାନ ଚାରିତ୍ରିକ ବୈଶିଷ୍ଟ୍ୟ 'ଗୋବିନ୍ଦ ଯେଉଁଟା କରିବ, ତାହିଁ କରିବ, କାହାରି କଥା ଶୁଣିବ ନାହିଁ , କାହାରି ଭଲ ମନ୍ଦକୁ ଚାହିଁବ ନାହିଁ । ଗୋବିନ୍ଦର ଆଉଯେଉଁ ଗୁଣଥାଉ ପଛକେ, ଆପଣା ମତକୁ ନିର୍ଭୁଲ ଜ୍ଞାନ କରେ ***।' ଏହାରି ସୁଯୋଗ ନେଇ ସଦାନନ୍ଦ ଏହା ମନରେ ଇନ୍ଦୁମତୀକୁ ବିବାହ କରିବାପାଇଁ ଆଗ୍ରହ ସୃଷ୍ଟି କରାଇ ବିବାହ ସଂପନ୍ନ କରାଇଥିଲା । ପୁନଶ୍ଚ ତା' ବାପାଙ୍କପ୍ରତି ଭୁଲଧାରଣା ସୃଷ୍ଟିକରାଇଥିଲା । ତାଙ୍କୁ ମା'ଙ୍କର ଶଯ୍ୟାଶାୟୀ ହେବା ଅବସ୍ଥାରେ ଶ୍ୱଶୁରଘରକୁ ପଠାଇ

ପାରିଥିଲା । ନିରପେକ୍ଷ ବିଚାର କରି କିଛି ସିଦ୍ଧାନ୍ତ ନେବାରେ ଏଇଗୁଣ ପ୍ରଧାନ ଅନ୍ତରାୟ ହେଉଥିଲା । ଗୋବିନ୍ଦର ସୁଖଦ ଜୀବନପ୍ରବାହରେ ଶ୍ୱଶୁରଘରକୁ ଯାତ୍ରା ଓ ସେଠି ପ୍ରହୃତ ହେବା ଏକବଡ ପରିବର୍ତ୍ତନ ଆଣିଥିଲା । ସେ ମଧ ଡାକ୍ତରଖାନାରେ ମା' ଓ ପତ୍ନୀଙ୍କ ମୃତ୍ୟୁ ସଂବାଦ ପାଇ ମ୍ରିୟମାଣ ହୋଇପଡିଥିଲା ଓ ସନ୍ନ୍ୟାସ ଗ୍ରହଣ କରିଥିଲା । ବୃନ୍ଦାବନରେ ପିତା ଓ ଶ୍ୱଶୁରଙ୍କ ସାକ୍ଷାତପାଇ ଓ ସେମାନଙ୍କ ପରାମର୍ଶରେ ସେ ବିଷୟା ସଂପତ୍ତିକୁ କୁଳଦେବତା ଦ୍ୱୟଂକ ସେବକଭାବେ ବୁଝାଶୁଝା କଲେ । ଉକ୍ତ ଚରିତ୍ରଟି ପୁତ୍ତଳିକା ପ୍ରାୟ । ନିଜସ୍ୱ ବିଚାର ଶକ୍ତି ରହିତ । ଅପରର କ୍ରୀଡନକ ହୋଇ ସେ ରହିଥିଲା ।

**ଗୋବିନ୍ଦ ପ୍ରଧାନ** - (ଛମାଣ ଆଠଗୁଣ୍ଠ) ମଂଗରାଜଂକ ହଳିଆଙ୍କ ସରଦାର । ଶ୍ୟାମ ଗୋଛାଇତର ତଳି ଓପଡା ଆଖ୍ୟାନ ମୂଳରେ ଅଛି ଏଇ ଚରିତ୍ରର ସୂଚନା - ''ଦେଢମାଣ ବିଲ ଅରୁଆ ରହିଗଲେ, ତଳି ନିଅଣ୍ଟ'' ।

**ଗୋବିନ୍ଦ** - (ଛମାଣ ଆଠଗୁଣ୍ଠ) ବାରିକ । ଯେ ମଂଗରାଜଙ୍କଠାରୁ ଚାବି ଆଣିବାର ବୁଦ୍ଧି ଚମ୍ପାକୁ ଦେଇଥିଲା । ଚଂପା ଓ ଏହା ଭିତରେ ଗୋପୀସାହୁର ଚଟିଘରେ ମନାନ୍ତର ଚରମରେ ପହଞ୍ଚିଥିଲା । ସଂପତ୍ତିଭାଗ ଥିଲା ଏହାର ଏକମାତ୍ର କାରଣ । ଚଂପା ମୁହଁରୁ ପୋଇଲୀ' ସମ୍ବୋଧନ ଶୁଣି ଓ ଚଂପା ନିଜେ ଭାତରେ ଦୁଧ ଢାଳିଦେବା ଦେଖି ସେ ଅଧିକ ଉଦ୍‌କ୍ଷିପ୍ତ ହୋଇପଡ଼ିଥିଲା । ଦୁଇଟି ବିଲୁଆ ବରଫଳ ଖାଉଖାଉ କଳି କରିବା ଓ ଗୋଟିଏ ବିଲୁଆ ଅପରକୁ ତଡ଼ିଦେଇ ଆପେ ସମସ୍ତଫଳ ଅଧିକାର କରି ଖାଇବା ଦେଖି ଗୋବିନ୍ଦା ସମାଧାନର ସୂତ୍ର ପାଇଯାଇଥିଲା ଓ ସେଇରାତି ଚଂପାକୁ ଖୁରଦ୍ୱାରା ହତ୍ୟା କରିଥିଲା । ମାତ୍ର ବିଲୁଆ ବରଫଳ ଭୋଗ କରିବା ପରି ସେ ସଂପତ୍ତି ଭୋଗ କରିପାରିନାହିଁ । ନାଉରିଆର ସନ୍ଦେହ ଯୋଗୁଁ ନଈପାରି ହେବାବେଳେ ଭୟଭୀତ ହୋଇ ସେ ନଈକୁ ଡେଇଁ ପଡିଥିଲା ଓ କୁମ୍ଭୀର ମୁହଁରେ ତାର ମୃତ୍ୟୁ ଘଟିଥିଲା । ଉପନ୍ୟାସରେ ଅତ୍ୟନ୍ତ ଅଳ୍ପ ସମୟ ପାଇଁ ଗୋବିନ୍ଦା ଆସିଛି ଅଥଚ ଅତ୍ୟନ୍ତ ତାତ୍ପର୍ଯ୍ୟ ଓ ଗୁରୁତ୍ୱପୂର୍ଣ୍ଣଭାବେ ନିଜ କାମ କରି ସ୍ମରଣୀୟ ହୋଇଯାଇଛି। ଚଂପାର ଔଦ୍ଧତ୍ୟକୁ ରୋକିବାପାଇଁ ଏପରି ଏକ ଚରିତ୍ରର ଆକସ୍ମିକ ଆଗମନ ଓ ନିର୍ଦ୍ଦୟ ପ୍ରତିରୋଧନ ବିସ୍ମୟକର ।

**ଗୋଲାପଲୋଚନ ପଟ୍ଟନାୟକ** - (ଗାରୁଡ଼ିମନ୍ତ୍ର) ବଡ଼ନଈ ପରଗନାର ଶାଳପାଳ ତାଲୁକର ଜମିଦାର । 'ଆପେ ପାଠୁଆ ନହେଲେ କ'ଣ ହେଲା, ସେ ପାଠର ମର୍ଯ୍ୟାଦା ବୁଝନ୍ତି: ଏକମାତ୍ର ସନ୍ତାନ ମଦନମୋହନ ହିଁ ଗଳ୍ପର ନାୟକ ।'

**ଘନ ରାଉତ** - (ମାମୁଁ) ପ୍ରତାପ ଉତ୍ତର ରାୟଂକ ମୃତ୍ୟୁ ସମୟରେ ଏ ତାଂକର ଜନୈକ ପ୍ରଜା । ହରିବୋଲ ବାରିକକୁ ସୂଚନା ଦେଇଚି ଜମିଦାର । ତା ପୁଅ ଶଙ୍କର ବୟସର । ଏକ

ମାଘରେ ଜନ୍ମ । ଶଙ୍କରର ବୟସ ହେଲା ଏକତିରିଶ । ଏହାରି କଥୋପକଥନ ମାଧ୍ୟମରେ ଜମିଦାରଙ୍କ ଆୟୁ ସୂଚିତ ।

**ଘନଶ୍ୟାମ ମହାନ୍ତି** - (ପାଠୋଇ ବୋହୂ) ପିତା-ରାମ ମହାନ୍ତି । ମୟୂରଭଞ୍ଜ ଦୋସମାଳୀ ତାଲୁକ ପୋଷିଗାଁ ପ୍ରଧାନ । ଦଶମାଣ 'ହେଣ' ଜମି ବାପ ଅମଳରୁ ମୟୂରଭଞ୍ଜ ରାଜାଘରୁ ପାଇ ଭାଲୁକ...ଷି ଗାଁରେ ବସବାସ କରୁଥିଲେ । ନାୟିକା ସରସ୍ୱତୀ ଏହାଂକ କନ୍ୟା ।

**ଘୁଷୁରିଆ** - (ଛମାଣ ଆଠଗୁଣ୍ଠ) ମଙ୍ଗରାଜଙ୍କ ହଳିଆ । ପୁଲିସ ତଦାରଖ୍ ଅଧ୍ୟାୟରେ ଚୌକିଆ ଗୋବରା ଜେନାଙ୍କୁ ଡାକିଯିବା ଅବସରରେ ଉପନ୍ୟାସକୁ ପ୍ରବେଶ କରିଛି । ସେ ଯାହାକୁ ଦେଖିଲା ତାକୁ ଗୋବରା ଜେନାକୁ ଖୋଜିବାକୁ ଯାଉଥିବାର ଗୋପନ ଉଦ୍ଦେଶ୍ୟ ଜଣାଇ ଆଉ କାହାରିକୁ ନ କହିବାକୁ ଜଣାଇଲା । ଏପରିଭାବେ କଥାପ୍ରଘଟ ହୋଇଗଲା ସାରାଗ୍ରାମରେ ।

**ଚଣ୍ଡୀ**- (ବିରେଇ ବିଶାଳ) ପୀତେଇ ପାତ୍ରର ପୁଅ, ବିରେଇର ମାମୁ ପୁଅ ଭାଇ । ତେର ବର୍ଷ ଯାଏଁ ଖଡ଼ିପାଠ, ଓଡ଼ାଙ୍କ ଛିଁଡିନି । ମାଇଁର ଗୋଟିଏ ଆଖି, ଭାରି ଗେହ୍ଲା । ମାଆ ମୁଁହ ପାଇ ଉତ୍ପାତିଆ, ଚାଲିଲା ଶଗଡରେ ହାତ ଦିଏ । ଚାଟଶାଳାରେ ଓ ଗାଁରେ ଉତ୍ପାତ କରେ । ମାଆ ଇଚ୍ଛାରେ ପାଠବନ୍ଦ ହୁଏ । ବାଉରୀ, ଧୋବା ଟୋକାଙ୍କ ସହ ଦିନରାତି ବୁଲେ । ବାପା କାମ ଦେଲେବି ମାଆ ବାଘୁଣୀ ପରି ପ୍ରଶ୍ରୟ ଦିଏ । ତାର କାମ ଗଛ ଚଢ଼ା, ବାଗୁଲୀ ଖେଳ, ଚଉପଟ୍ ଖେଳ, ଗଞ୍ଜେଇ ଭିଡ଼ା, ମଦ ଖଟି ଇତ୍ୟାଦି । ମାଆଠି ଅଳିକରି, ଡ଼ରେଇ, କାନ୍ଦି ପଇସା ନିଏ । ଆପଣା ଗୋଠର କୋଡ଼ିଏ-ପଚିଶ ଟଂକାର ଦାମୁଡ଼ିକୁ ଗୁଆଳାଙ୍କୁ ଦୁଇଚାରି ଟଂକାରେ ବିକେ । ଆପଣା ଘର ମରେଇରୁ ଧାନ ଚୋରୀ କରି ବିକେ । ମାଆକୁ ଟଂକା ପଇସା ପାଇଁ ମାଡ଼ ଦିଏ । ଦେଢ଼ ହଜାର ଟଂକା ଖର୍ଚ୍ଚକରି ବାପାମାଆ ତାର ବିବାହ କରାନ୍ତି । ବିରେଇ ଯିବାପରେ ଖୋଲା ଖୋଲି ବାପସଂପତ୍ତି ବିକେ ଓ ବାପା ମାଆଙ୍କୁ ମାଡ଼ ମାରେ । ଶେଷରେ ଗୋରୁ ଚୋରୀ କରି ଦେଢ଼ବର୍ଷ ସଶ୍ରମ କାରାଦଣ୍ଡ ଭୋଗେ ।

**ଚନ୍ଦ୍ରମଣି** - (ଛମାଣ ଆଠଗୁଣ୍ଠ) ବାଘସିଂହ ବଂଶର ଜ୍ୟେଷ୍ଠ ଭୀମସେନ ବାଘସିଂହର ପୁଅ । ବିଭା ହୋଇଥିଲା ତାଳିଯୋଡା ଫତେସିଂହ ପରିବାରରେ । ଯା ବୋହୂର ମାଉସୀ ଭାବେ ଚମ୍ପା ଯାଇଥିଲା ଟାଂଗୀ ମାଉସୀ ରୂପରେ । ବାଘସିଂହଙ୍କ ସର୍ବନାଶ ପାଇଁ । ଚନ୍ଦ୍ରମଣିର ନବବିବାହିତା ସ୍ତ୍ରୀକୁ କରାଯାଇଥିଲା ମାଧ୍ୟମ ।

**ଚନ୍ଦ୍ରମଣି ପଟ୍ଟନାୟକ** - (ପେଟେଣ୍ଟମେଡ଼ିସିନ୍) ପିତା-ଶ୍ୟାମ ପଟ୍ଟନାୟକ, ଜମିଦାର । ବାଲ୍ୟକାଳରୁ ନିଶାଖୋର । କୁସ୍ଥାନ ଗମନ ଅଭ୍ୟାସରେ ପରିଣତ ହୋଇଥିଲା । ବିବାହପରେ ସୁଦ୍ଧା ଅବସ୍ଥା ଓ ଆଚରଣରେ କୌଣସି ପରିବର୍ତ୍ତନ ହୋଇନଥିଲା । ଅଚ୍ଛଟଂକା ନେଇ ବେଶୀ

ଟଂକାର ହ୍ୟାଣ୍ଡନୋଟ ଲେଖିନେଉଥିଲେ । ବିରକ୍ତ ପିତା ସଂପତ୍ତିକୁ ବୋହୂନାମରେ ଲେଖିଦେଇଥିଲେ । ଏହି ମଦ୍ୟପ, ବେଶ୍ୟାସକ୍ତ ପୁରୁଷର ପରିବର୍ତ୍ତନ ହିଁ ଗଳ୍ପର ଉପଜୀବ୍ୟ । ଚନ୍ଦ୍ରମଣି କେନ୍ଦ୍ରୀୟ ଚରିତ୍ର । ଉତ୍ଥାନତାରାକୁ ଦେଖିବାକୁ ତାଂକର କୌଶଳ, ଅର୍ଥପାଇଁ ସାନ୍ତାଣୀଙ୍କ ବାକ୍ସରୁ ଚୋରୀ, ଏସବୁ ଲକ୍ଷ୍ୟହାସଲପାଇଁ ଏହାଙ୍କ ଚତୁରବୁଦ୍ଧିକୁ ସୂଚାଏ । ଏ ବୁଦ୍ଧି କିନ୍ତୁ ଖଳ - ପଥାନୁଗ । ସ୍ତ୍ରୀଙ୍କ କ୍ରୋଧୋନ୍ମତ୍ତ ଛାଞ୍ଚୁଣୀ ମାଡ଼ 'ପେଟେଣ୍ଟ ମେଡ଼ିସିନ' ଭାବେ ଏହାଙ୍କ ପରିବର୍ତ୍ତନର କାରଣ ହୋଇଛି ।

**ଚମ୍ପା** - (ଛମାଣ ଆଠଗୁଣ୍ଠ) ଜମିଦାର ମଙ୍ଗରାଜଙ୍କ ଉଆସର ପୋଇଲୀ, ଅଥଚ ତା'ର କର୍ତ୍ତୃତ୍ୱ ସାଆନ୍ତାଣୀଙ୍କଠାରୁ ଅଧିକ । ମଙ୍ଗରାଜଙ୍କ ଶୋଷଣ, ପୀଡ଼ନର ମୁଖ୍ୟ ସହାୟିକା । ମଙ୍ଗରାଜଙ୍କ ପିଉସୀ ପୁଅ ଭାଇ ଶ୍ୟାମମଲ୍ଲ ପିଆଜ ଖାଇ ପ୍ରାୟଶ୍ଚିତ୍ତ କରିବା ପ୍ରସଙ୍ଗରେ ପ୍ରଥମେ ଅତ୍ୟନ୍ତ ଗୁରୁତ୍ୱହୀନ ଭାବେ ଚଂପାର ନାମୋଲ୍ଲେଖ ଉପନ୍ୟାସରେ ଘଟିଚି ଅଥଚ ଏଇ ଚଂପା ତାର ପୋଇଲୀ ଭୂମିକାରୁ ଖୁବ୍ ଦ୍ରୁତଗତିରେ ଉନ୍ନୀତ ହୋଇଥାଏ । ମଂଗରାଜଂକ ସହାୟିକା ଭାବେ । ଏହାର କ୍ଷମତା ଓ ପ୍ରତିପତ୍ତି ଦର୍ଶାଇବାକୁ ଫକୀରମୋହନ ମଧ୍ୟ 'ଚଂପା ସାଆନ୍ତାଣୀ' ସମ୍ବୋଧନ କରିବାକୁ ପଶ୍ଚାଦ୍‌ପଦ ନୁହନ୍ତି । ଉପନ୍ୟାସର ଷଷ୍ଠ ପରିଚ୍ଛେଦ ଏହାରି ନାମରେ ନାମିତ ତଥା ଏହାର ପରିଚୟାତ୍ମକ ବର୍ଣ୍ଣନାରେ ପୂର୍ଣ୍ଣ । ଚଂପାକୁ 'ନାୟିକା' ଭାବେ ଫକୀରମୋହନ ସ୍ୱୀକାରକରି ତାର ରୂପଗୁଣର କାବ୍ୟିକ ବର୍ଣ୍ଣନାରେ ଯଥେଷ୍ଟ ଶ୍ରମ ସ୍ୱୀକାର କରିଛନ୍ତି । -

କଜ୍ଜ୍ୱଳପୁରିତ ଲୋଚନଭାଲେ	ଗୁଣ୍ଡିମିଶା ଖିଲ୍ଲୀ ଗୁଞ୍ଜିତ ଗାଲେ
ତୈଳ ହରିଦ୍ରା ବୋଳିତ ଦେହେ	କୁକ୍‌କୁରୀବ ଶୀଘ୍ରଂଧାବତି ଗେହେ । ୨।

* * * *

ଦୁମଦୁମୁ ଗୁମୁ ଚଳନଂ ତସ୍ୟା	ଚଳତି ବା ଧାବତି ବିଷମ ସମସ୍ୟା । ଇତ୍ୟାଦି...।

ଖଳବୁଦ୍ଧି ଏହାର ଅତ୍ୟନ୍ତ ପ୍ରଖର । ସାରିଆକୁ ଚଂପାହିଁ ବୁଢ଼ୀ ମଙ୍ଗଳାଙ୍କ ନାମରେ ମନ୍ଦିର କରିଦେଲେ ତିନିପୁଅ ହେବ - ଏ ବିଶ୍ୱାସ ଦିଆଇଛି । ସାରିଆର ବନ୍ଧ୍ୟାତ୍ୱକୁ ପୁଞ୍ଜିକରି 'ସ୍ୱରଚିତ ଭାଗବତ' ର ଅଂଶବିଶେଷ ମାଧ୍ୟମରେ ତାକୁ ପ୍ରଭାବିତ କରିବାକୁ ଚେଷ୍ଟା କରିଚି ଓ ଏପରି ଭାବେ ତାର 'କବି - ବ୍ୟକ୍ତିତ୍ୱ' ର ପରିଚୟ ମିଳିଚି -

ଯାହାର ପିଲାଝିଲା ନାହିଁ	ସକାଳୁ ତା'ମୁହଁ ଚାହିଁବି ନାହିଁ
ତିନିପୁଅାତୀ ସୁଲକ୍ଷଣୀ	ବାଂଝ ବରତୀ ଗାଁ ନିଉଛୁଣୀ
ଯାହାର ଘରେ ପୁଅଝିଅ ନଥାଏ	ସେ ମାଇକିନିଆ ବଡ ଦୁଃଖପାଏ ।

ଏହାର କ୍ଷମତା, କର୍ତ୍ତୃତ୍ୱ, ଶାଠ୍ୟ, ଚାତୁରୀ ସତ୍ତ୍ୱେ ପରିଣତି ଅତ୍ୟନ୍ତ କରୁଣ । ବାରିକ

ଗୋବିନ୍ଦାର ଖୁରରେ ପ୍ରାଣଯାଇଛି ତାର ଗୋପୀ ସାହୁର ଚଟିଘରେ । ଉପନ୍ୟାସରେ ଚଂପାର ଆଗମନ ଓ ବିକାଶ ବିସ୍ମୟକର, ପରିଣତି ଅପ୍ରତ୍ୟାଶିତ । ନିଦ୍ରିତ ଅବସ୍ଥାରେ ହନନ ହେବା ପରେବି ଏହାର ଦୁର୍ଦ୍ଦଶା ସରେ ନାହିଁ । ହାଡିମାଂନକଦ୍ୱାରା ଏହାର ଶବଟଣା ହୋଇଯାଇଛି। ତା ଦେହରୁ ଲୁଗାପଟା କାଢି ଲଂଗଳା କରିଦିଆଯାଇଛି । ଗୋଡ଼ର ପହୁଡ଼ ନଖୋଲିବାରୁ କୁରାଢ଼ୀରେ ହାଡିମାନେ 'ଗାଣ୍ଠି' କାଟି ଦେଇଚନ୍ତି ଓ ଶେଷରେ ସେ 'ସାପକାଟି'ରେ ମରିଥିବା ପୁଲିସ୍ ଧାର୍ଯ୍ୟ କରିଚି । କୁମ୍ଭୀର ତା ଲାସ୍‌କୁ ଟାଣିନେବା ଓ ଜନଚିତ୍ତରେ ସେ ପେତୁଣୀ ଭାବେ ପରିଚିତ ହୋଇ ରହିବା ଏ ଚରିତ୍ର ପ୍ରତି ଚରମ ଉପହାସ । ଶେଷକୁ ଗୋପାଳପୁରର ନାମ ଯେ ପେତୁଣୀପଦାକୁ ବଦଳିଗଲା ତାର କାରଣ ବି ଯେ ଚଂପା !!

**ଚମ୍ପା** - (ସୁନାବୋହୂ) ରାମହରି ପଟ୍ଟନାୟକଙ୍କ ଝିଅ । ବାପ ମଲାବେଳେ ବୟସ ପାଞ୍ଚ । ଚଂପାଟି ଦେଖିବାକୁ ବେଶ୍ ଡଉଲ୍ ଡାଉଲ୍ । ନାକଟି ଖଣ୍ଡାଧାର ପରି ସିଧା । କଳା କଳା ବଡ଼ ବଡ଼ ଆଖି ଯୋଡ଼ିକ ଢ଼ଳଢ଼ଳ ଦିଶୁଥାଏ । ମୁଣ୍ଡର ଅଳକା ଆଉ ଦାନ୍ତ ଗୁଡ଼ିକ ସୁନ୍ଦର, ମୁହଁଟିକୁ ସୁନ୍ଦର ମାନେ । କୁଙ୍କୁମ ବୋଲିହେଲାପରି ଦେହଟିର ରଙ୍ଗ । ଯିମିତି ରଙ୍ଗ ସିମିତି ଗୁଣ ।' ଭାଉଜ ଘରର କାମ ପାଇଟି ନ କରିବାରୁ ଚମ୍ପା ତାକୁ ପ୍ରଥମେ ପରାମର୍ଶ ଓ ପରେ ଗାଳି ଦେଇଥିଲା । ସ୍ୱାମୀ ଦିବାକର ସହ ସୁଖରେ ଦାମ୍ପତ୍ୟ ଜୀବନ ଅତିବାହିତ କରୁଥିଲା । 'ଦୁଇଜଣଙ୍କର ଏକମନ, ଏକକଥା, ଏକ ଇଛା'। ଚମ୍ପାର ରୂପଗୁଣର ବର୍ଣ୍ଣନା ଭାଉଜ ନିମା'ର ରୂପ ଗୁଣଗତ ନ୍ୟୁନତା ଅଧିକ ଅନୁଭବ୍ୟ ।

**ଚରଣ ଦାସ** - (କାଳିକା ପ୍ରସାଦ ଗୋରାପ): ଫିରିଙ୍ଗୀ ଜଳଦସ୍ୟୁ ବିରୁଦ୍ଧରେ ଅନୁଷ୍ଠିତ ସଭାରେ ଉପସ୍ଥିତ ବ୍ୟକ୍ତି ।

**ଚାନ୍ଦମଣି** - (ମାମୁ) ଦାଶରଥି ଦାସଂକ କନ୍ୟା । ଜନ୍ମ ପରେ ପରେ ଏ ଶିଶୁ କନ୍ୟାଟିର ବିସ୍ତୃତ ରୂପ ବର୍ଣ୍ଣନା ଏହାର ଗୁରୁତ୍ୱକୁ ସୂଚିତ କରିଥାଏ । ସେ, 'ଆନନ୍ଦର ପ୍ରତିମା, ଗୁଣରେ ଦେବକନ୍ୟା, ଶିକ୍ଷାରେ ବାଗଦେବୀଙ୍କ ଅନୁଗୃହୀତା'। ପରବର୍ତ୍ତୀ ସମୟରେ ଉତ୍ତରରାୟ ବଂଶର ପ୍ରତାପ ଉଦିତମଲ୍ଲଂକୁ ବିବାହ, ଚାନ୍ଦମଣିକୁ ଏକ ନୂଆ ପରିଚୟ ଦେଇଚି । ମାତ୍ର ସ୍ୱାଭାବିକ ଆତ୍ମମଗ୍ନ ସ୍ୱଭାବହେତୁ ଏ ଚରିତ୍ରର ଜମିଦାରଙ୍କ ପତ୍ନୀଭାବେ ଯେଉଁ ପରିଚୟ ମିଳିବାର ସଂଭାବନା ଥିଲା ତା' ହୋଇ ପାରିନାହିଁ । ସେ ଜଣେ ସ୍ୱାମୀଅନୁଗତା ସ୍ତ୍ରୀ । ପ୍ରେମଶୀଳା । ଦାସୀମାନଙ୍କ ପ୍ରତି ସେ କରୁଥିଲେ କୋମଳ ବ୍ୟବହାର । ବିଷୟ ସଂପତ୍ତିପ୍ରତି ନିସ୍ପୃହା ଜଣେ ପତି ଗତ ପ୍ରାଣା ସ୍ତ୍ରୀ ଭାବେହିଁ ଏହାଙ୍କର ପରିଚୟ ବିକଶିତ ହୋଇ ପାରିଛି ।

**ଚାନ୍ଦିଆ ବେହେରା** - (ଛମାଣ ଆଠଗୁଣ୍ଠ) ଗୋପାଳପୁର ପାଖ ବିରୂପା ନଦୀଘାଟର ନାଉରିଆ । ସେ ସରକାରୀ ଡାକ ପାରିକରିବା ସକାଶେ ଦିନରାତି ପଲା ମାରିରହିଥାଏ । ସାଧାରଣ ବାଟୋଇଙ୍କଠାରୁ ଏଣୁ ତେଣୁ ଜିନିଷପାଏ । ମହାଜନ କାହାକାହା ପାଖରୁ ପଇସାଏ

ଅଧଲାଏ ପାଏ । ଦାରୋଗା, କାନଗୋଇଙ୍କଠାରୁ ବିଧା, ଚାପୁଡା । ଚାନ୍ଦିଆକୁ ବଡ଼ିଭୋରରୁ ଗୋବିନ୍ଦା ନଦୀ ପାରିକରିଦେବାକୁ ଡାକିଥିଲା । ଗୋବିନ୍ଦାର 'ଭାଇ' ସମ୍ବୋଧନ ଓ ପରେପରେ 'ପାଞ୍ଚଟଂକା' ଖଇଖିଆର ଲୋଭ ଚାନ୍ଦିଆକୁ ତତ୍ପର କରାଇଥିଲା । ସେ ଗୋବିନ୍ଦା ଦେହରେ ରକ୍ତ ଛିଟିକା ଦେଖି ସନ୍ଦେହ କରିଥିଲା ଓ ଏଇ ସନ୍ଦେହ ଯୋଗୁଁ ଗୋବିନ୍ଦା ଭୟଭୀତ ହୋଇ ନଈକୁ ଡେଇଁ ପଡିଥିଲା । ପୁଲିସ୍ ଆଗରେ ଚାନ୍ଦିଆ ମିଥ୍ୟା ସାକ୍ଷ୍ୟ ଦେଇ ଚାରିଦିନହବ ଝଡ଼ବର୍ଷା ଲାଗି କେହି ନଈ ପାରିହୋଇ ନଥିବା କଥା କହିଥିଲା ।

**ଚିତ୍ରକଳା -** (ମାମୁ) ଚିତ୍ରକଳା ଓରଫ ଚିତ୍ରା ଏ ଉପନ୍ୟାସର ଖଳନାୟିକା । ଷୋଡଶ ଅଧ୍ୟାୟଟି ଏହାରି ନାମରେ ନାମିତ ଓ ଏହାର ପରିଚୟ ଏଇଠାରୁହିଁ ପାଠକ ପାଏ । ଏହାର ରୂପ, 'ଚଂପାଫୁଲ ପରି ଚହଟଗୋରୀ ନୁହେଁ, ଦେହର ରଙ୍ଗଟା ଶ୍ୟାମଳ, ମୁଖଟିର ଗଢ଼ଣ ସୁନ୍ଦର ।' ଏହି ସୌନ୍ଦର୍ଯ୍ୟ ପଛରେ ରହିଥିଲା ଧୂର୍ତ୍ତତା, ଶଠତା । ସେ ଏପରି ଚତୁର ଯେ ନାଜରଙ୍କ ଆଖିରେ ମଧ ଧୂଳିଛାଟି ଦେଇପାରେ !! ନାଜରଙ୍କ ଘରେ ପୋଇଲୀ ଭାବେ ଏହାର ଚିତ୍ରଣ ଘଟିଛି । ମାତ୍ର ଏ ଉକ୍ତିର ଚିତ୍ରଣ ବ୍ୟଂଜନାମୟ । ବ୍ୟଂଜନାରୁ ଜଣାପଡେ ସେ ନାଜରଂକ ଉପପତ୍ନୀ । ନାଜରଂକୁ ପୁଲିସ ଗିରଫ କରିବାପରେ ତାଂକ ସ୍ତ୍ରୀ ଓ ଶାଶୁଙ୍କ ବିଶ୍ବାର ଓ ଭରସା ପ୍ରତିଫଳ ଦେଇଚି ଯେ ସେମାନଙ୍କ ଗହଣା ଚୋରୀ କରି, ନିଜର ସୌନ୍ଦର୍ଯ୍ୟ ଓ ଚାତୁରୀରେ ଅନ୍ୟମାନଙ୍କୁ ବଶକରି, ସେମାନଙ୍କ ଆସ୍ଥାଭଜନ ହୋଇ ସେଇମାନଙ୍କୁ ହିଁ ତଳିତଳାନ୍ତ କରୁଛି । ନାଜରଙ୍କ ବାହୁଛାୟାର ନିରପତ୍ତାରେ ରହି ସୁଯୋଗ ମାତ୍ରେ ତାଂକର ଓ ତାଂକ ପରିବାରର ଅନ୍ୟମାନଙ୍କର ଅର୍ଥ ଆତ୍ମସାତ କରେ । ଏଥିରୁ ସ୍ୱାର୍ଥପରତାରେ ସେ କେତେ ଉଗ୍ର ଜଣାପଡିଯାଏ ।

**ଚେମୀ -** (ବଗୁଲା ବଗୁଲୀ) ଗପର ମୁଖ୍ୟ ନାରୀ ଚରିତ୍ର 'ବଗୁଲୀ' । ମକ୍ରାମପୁର ଗାଁର ଚଉକିଦାର ଦଣ୍ଡିଆ ପାତ୍ରର ଝିଅ, ବିଦ୍ୟାପାତ୍ର ପୁଅ ସପ୍ନାର ସ୍ତ୍ରୀ । ଏଇ ଦୁଇ ସ୍ୱାମୀ ସ୍ତ୍ରୀକୁ ଭୁଷଣ୍ଡପୁର ଗାଁର ସମସ୍ତେ 'ବଗୁଲା ବଗୁଲୀ' ନାଁରେ ଜାଣନ୍ତି । ରୂପରେ ଡଉଲ ଗୁଣବତୀ । କଣ୍ଡରା କୁଳ ନୁହେଁ, ବ୍ରାହ୍ମଣ କୁଳ ଝିଅପରି । ଖୁବ୍ ଘରଣୀ । ସ୍ୱାମୀର ଆଜ୍ଞାଧିନ, ସବୁକଥାରେ ହଁ ଭରେ । ସ୍ୱାମୀକୁ 'ଖାଉନ୍ଦ' ବୋଲି ଡାକେ । ସ୍ୱାମୀଠୁ ପୁରାଣ ଶୁଣି ଭକ୍ତିରେ ଗଦ୍‌ଗଦ୍ ହୋଇଉଠେ । ଏପରି ପତିଗତପ୍ରାଣା ଯେ ଏକାଦିନେ ସ୍ୱାମୀସହ ଦେହତ୍ୟାଗ କରଛି । ଅତି ସରଳ, ନିର୍ମାୟା ଓ ନିରୀହ ଚରିତ୍ର ।

**ଛକଡ଼ି ପଟ୍ଟନାୟକ -** (ମାମୁ) ନାଜର ନଟବରଙ୍କ ଶ୍ୱଶୁର । ହରିଶପୁର ଅସୁର ଗଡ଼ିଆ ମୌଜାରେ ଘର । ପୂର୍ବରୁ ଜମିଦାର ଘରେ ପିଆଦା ଥିଲେ । ନାଜରଙ୍କ ବିବାହର ଚାରିବର୍ଷ ପୂର୍ବରୁ ସେ ସ୍ୱର୍ଗତ ହୋଇଥିଲେ ।

**ଛଟୀ ମହାନ୍ତି** - (ପ୍ରାୟଶ୍ଚିତ) ସଂକର୍ଷଣ ମହାନ୍ତିଙ୍କ ଉଆସର ଉଆସକରଣ ।

**ଛାମୁକରଣଘର ବଡବୋହୂ** - (ମାମୁ) ପଞ୍ଚଦଶ ପରିଚ୍ଛେଦରେ ଏହାର ଆଗମନ ଘଟିଛି । ବିଶାଖା ଦେବୀଙ୍କ ରୂପ ଗୁଣଚର୍ଚ୍ଚା କରୁଥିବା ଅନ୍ୟତମ ଗ୍ରାମ୍ୟ ସ୍ତ୍ରୀ । କରଣକୁଳର ଉପଯୁକ୍ତ ବୋହୂଭାବେ ନିଜକୁ ଚିତ୍ରିତକରି ସେ କହେ, ଚାଉଳ ନଥିଲେ ଶାଶୁଙ୍କ ଆଗରେ ଖାଲିପାଚିଆ ଧରି ଧାନକୁଟିଲା ପରି ଗୋଡ଼ କଚାଡ଼େ, ଲୁଗା ଧୋବାଘରକୁ ଯିବା କଥାତ ଲୁଗାସବୁ ଧୋବା କାଚିଲାପରି ଇସ୍‌ଇସ୍ କରିକାଚେ । ବାପଘରୁ କିଛିଭଲମନ୍ଦ ଆସିଲେ ସେ ବାରିପଟରେ ପଛେ ଖାଏ, ଶାଶୁ ଆଗରେ ଖାଇବାକୁ ମନାକରେ । ଏସବୁ କାରଣ ଘର ବୋହୂର ସଣ୍ଢଣା ।

**ଜଗତ ସେଠ** - (ଲଛମା) ସୁବାଦାର ଆଲିବର୍ଦ୍ଦିଖାଁଙ୍କ ପାରିଷଦ । ଜଣେ ଧନକୁବେର । ସୁବାଦାର ଏହାଙ୍କଠାରୁ ଅଶୀଲକ୍ଷ ଟଂଙ୍କା ଋଣନେଇ ସୈନ୍ୟମାନଙ୍କୁ ବେତନ ଦେଇଥିବା ସୂଚିତ । ଆଲିବର୍ଦ୍ଦିଙ୍କ ଓଡିଶା ଯୁଦ୍ଧଯାତ୍ରା ବେଳେ ଏହାଙ୍କ ଦୁଇହଜାର ସୈନ୍ୟ ତାଂକର ଅନୁଗମନ କରିଥିଲେ । ମୀର ହବିବ ପ୍ରାସାଦ ଲୁଣ୍ଠନ କରି ଦୁଇକୋଟିଟଂକା ହରଣ କରି ନେଇଥିଲେ ମରହଟ୍ଟାମାଂନକପାଇଁ । ଉପନ୍ୟାସର ଅଗ୍ରଗତିରେ ଏହାଙ୍କ ଭୂମିକା ଗୌଣ ।

**ଜଗବନ୍ଧୁ ମଲ୍ଲ** - (କାଳିକା ପ୍ରସାଦ ଗୋରାପ): ଦୁର୍ଗାପ୍ରସାଦ ଗୋରାପର ମାଲିକ । ବାବୁ ରଘୁନାଥ ଦେ ଘରେ ତୁର୍କ ଜଳଦସ୍ୟୁ ବିରୋଧି ବୈଠକରେ ଉପସ୍ଥିତ ଥିଲେ । ସୂତାନଟୀ ହାଟରେ କାରବାର ସପକ୍ଷରେ ଓ ଇଂରେଜ ବ୍ୟତୀତ ଅନ୍ୟାନ୍ୟ ଫିରିଙ୍ଗୀ ବ୍ୟବସାୟୀ ସହ କାରବାର ବିପକ୍ଷରେ ସେ ମତାମତ ଦେଇଛନ୍ତି ।

**ଜଗାଫତେସିଂହ ମା** - (ଲଛମା) ଲଛମା ସହ କଥୋପକଥନ ଓ ଗାଳିଦେବା ଅବସରରେ ଏହାସହ ପାଠକଙ୍କ ପରିଚୟ ଘଟେ ଷୋଡ଼ଶ ପରିଚ୍ଛେଦରେ । ମଧୁପୁର ପାଇକଗାଁରେ ଏହାର ଘର । ସ୍ୱାମୀ ଓ ପୁଅ ଦୁଇଟି ଯୁଦ୍ଧରେ ମୃତ୍ୟୁବରଣ କରିଥିଲେ । ତାର ରୂପ- 'ଗୋଟିଏ ଅତ୍ୟନ୍ତ ବୃଦ୍ଧା, ନିତାନ୍ତ ମଳିନ ଛିନ୍ନବସ୍ତ୍ର ପରିହିତା, ଦଶନ ବିହୀନ, ଅସ୍ଥିଚର୍ମ ମାତ୍ରାବଶିଷ୍ଟ,କମ୍ପିତ ଦେହା, ଅନାବୃତ ମସ୍ତକରେ କେରାକେରା ତୈଳହୀନ, କଙ୍କତିସ୍ପର୍ଶ ବର୍ଜ୍ଜିତ, କ୍ଷୁଦ୍ର କାଉଁରିଆ ଝୋଟ ପରି ଶୁକ୍ଳବର୍ଣ୍ଣ କେଶ ଫରଫର ଉଡୁଅଛି । ବାଁ କାଖରେ ଟୋକେଇଟିଏ, କମ୍ପିତ ଦକ୍ଷିଣ ହସ୍ତରେ ଖଣ୍ଡିଏ ବାଉଁଶ ଯଷ୍ଟି .......।' ଗାଳିଦେବା ତାର ଅଭ୍ୟାସ । ଅଳ୍ପସମୟ ପାଇଁ ଏ ଚରିତ୍ର ଆସିଥିଲେହେଁ ଅତ୍ୟନ୍ତ ପ୍ରଭାବଶାଳୀ ଓ ଜୀବନ୍ତ ।

**ଜଗା ଭଣ୍ଡାରୀ** - (ଛମାଣ ଆଠଗୁଣ୍ଠ) ମଙ୍ଗରାଜଙ୍କ ଏକାଦଶୀ ପାଳନ ପରେ ଦ୍ୱାଦଶୀ ପାରଣା ରହସ୍ୟ ଜଗାଭଣ୍ଡାରୀ ମୁହଁରେ ଅକସ୍ମାତ ଚିତ୍ରିତ ହୋଇଛି । ଏକାଦଶୀ ସଞ୍ଜବେଳେ ମଂଗରାଜଙ୍କ ଶୋଇବା ଘରେ ସେରେ ଦୁଧ, ଦିଶୁଖଇ, ନବାତ, ପାଚିଲା କଦଳୀ ରଖା ଯାଇଥାଏ । ଦ୍ୱାଦଶୀ ସକାଳରେ ସେ ତୁଚ୍ଛାବାସନ ମାଜେ । ଅଥଚ ଦ୍ୱାଦଶୀ ଦିନ ବ୍ରାହ୍ମଣ

ଭୋଜନ ଉତ୍ତାରୁ ପାରଣା କରିବା ତାଂକର ନୀତି । ଜଗାର ଉକ୍ତି ଭିତରେ ମଂଗରାଜଙ୍କ ଛଦ୍ମ ଧାର୍ମିକତା ପ୍ରତି ଅଛି ଚରମ ବ୍ୟଂଗ । ସନାରଣାର ସାକ୍ଷ୍ୟପ୍ରଦାନରେ ଜଗାଭଣ୍ଡାରୀର ଅନ୍ୟ ଏକ ଦିଗର ସଂଧାନ ମିଳେ । ମଂଙ୍ଗରାଜଂକ ବସିବା ମୁତାବକ ବୁଢୀ ମଙ୍ଗଳା ପଛରେ ଖୋଳା ଯାଇଥିବା ଗାଡ଼ରେ ସେ ଲୁଚିରହି ସାରିଆକୁ 'ବୁଢୀ ମଙ୍ଗଳା' ଭାବେ କହିଥିଲା ତାର ସେବାରେ ସେ ସନ୍ତୁଷ୍ଟ । ତାର ତିନିପୁଅ, ଧନରତ୍ନ ହେବ । ସେ ମନ୍ଦିର ତୋଳାଇ ଦେଉ । ଆଜ୍ଞା ପ୍ରମାଣେ କାମ ନକଲେ ଭଗିଆର ବେକ ସେ ମୋଡ଼ି ଦେବ ।

**ଜନ ବିଚାର** - (ବାଲେଶ୍ୱରୀ ରାହାଜାନୀ): ଇଂରେଜ ଭଦ୍ରଲୋକ । ସରକାରଙ୍କ ଠାରୁକେତେକ ଜମି ନିଷର ଗ୍ରହଣ କରି ସେଥିରେ ବାଲେଶ୍ୱରରେ ବିଚରଗଞ୍ଜ, ବସ୍ତାରେ ମୂଳିଦା, ବାଁଲଗା, ମାର୍କଣା, ଟାଙ୍ଗି, କଟକ ପ୍ରଭୃତି ସ୍ଥାନରେ ସରାଇଘର ନିର୍ମାଣ ଓ ଦୋକାନ ବସାଇଥିଲେ । ଗଳ୍ପର ପଟ୍ଟଭୂମି ନିର୍ମାଣ ସୂତ୍ରରେ ଏହି ଚରିତ୍ରର ଉଲ୍ଲେଖ ରହିଚି ।

**ଜମାଦାର** - (ରାଣ୍ଡୀପୁଅ ଅନନ୍ତା) ପୁଲିସ ସାହେବ ସୁବଳମହାକୁଡ଼ର କଥା ବୁଝିନପାରିବାରୁ ଏହି ଜମାଦାର କଥାର ଅର୍ଥ ବତାଇଥିଲା ତ୍ରୁଟିପୁର୍ଣ୍ଣ ଇଂରାଜୀରେ । ସେ ଫାଷ୍ଟବୁକ ଖଣ୍ଡିକ ମାତ୍ର ପଢିଥିଲା ଅଥଚ ଚୌକିଦାରମାନଙ୍କ ଆଗରେ ଇଂରେଜପଢୁଆର ପରିଚୟ ଓ ଗୌରବ ପାଉଥିଲା । ତାର ଇଂରାଜୀର ବକ୍ତବ୍ୟ ହିଁ ତା ଇଂରାଜୀ ଜ୍ଞାନର ଦ୍ୟୋତକ ।

**ଜାନକୀ ରାମ** - (ଇଛମା) ନବାବ ଆଲିବର୍ଦ୍ଧି ଖାଁଙ୍କ ପକ୍ଷର ଦୂତ । ମରହଟ୍ଟା ସହ ଛଦ୍ମସନ୍ଧି ପ୍ରସ୍ତାବ ବେଳେ ଏହାଙ୍କୁ ପଠାଯାଇଥିଲା । ବାଲାଜୀରାଓ ହୁଲ୍‌କାରଙ୍କ ଚୌଡ଼ା ଆଦାୟ ପାଇଁ କଟାଳକୁ ଏଡ଼ାଇବାକୁ ମଧ ଜାନକୀରାମ ସନ୍ଧିପ୍ରସ୍ତାବ ଘେନି ଯାଇଥିଲେ । ଭାସ୍କର ପଣ୍ଡିତଙ୍କ ପାଖକୁ ସେ ସର୍ବଶେଷ ଛଦ୍ମସନ୍ଧି ପ୍ରସ୍ତାବ ନେଇ ଯାଇଥିଲେ ଓ ଆପଣାବାକ୍ ପଟୁତାରେ ତାଂକୁ ରାଜି କରାଇବାରେ ସଫଳ ହୋଇଥିଲେ । ଉପନ୍ୟାସର ପରିଣତିବେଳେ ଯେ ମୃତ୍ୟୁବରଣ କରିଛନ୍ତି । ଏ ବିଶ୍ୱାସଘାତକତାର ଫଳ ।

**ଜାହେର ବକ୍ସ** - (ଛମାଣ ଆଠଗୁଣ୍ଠ) ସେଖ୍ ଦିଲ୍‌ଦାର ମିଆଁଙ୍କ କଚେରୀଘରେ ସର୍ଭିଏ ବିମର୍ଷ ଭାବେ ବସିଥିବାର ବର୍ଣ୍ଣନା ବେଳେ ଏହାଙ୍କୁ 'ଏକ ଖଣ୍ଡ କାଗଜରେ ଲେଖା ଡ଼ାବ ଧରି' ଛିଡ଼ା ହୋଇଥିବା ଦେଖିବାକୁ ମିଳେ । ଇଏ ମିଆଁଙ୍କ ମୁନ୍‌ସୀ । ମିଁଆଙ୍କ ଆର୍ଥିକ ଦୁସ୍ଥିତି ଏହାର ଉକ୍ତି ମାଧମରେ ଚିତ୍ରିତ ହୁଏ, 'ପାଞ୍ଚ ବରଷ ମଧରେ ପଚିଶ ହଜାର' କରଜ ଆଣି ପାରିଥିବା କଥାକୁ ଆପଣା ଯୋଗ୍ୟତାର ପ୍ରମାଣ ଭାବେ ସେ ଉଲ୍ଲେଖ କରିଛି ।

**ଜେକସନ** - (ଛମାଣ ଆଠଗୁଣ୍ଠ) ପୂରାନାମ ଏଇଚ. ଆର. ଜେକ୍ସନ । ସେସନଜଜ । ଏହାଙ୍କଠାରେ ମଙ୍ଗରାଜଙ୍କ ମକଦ୍ଦମା ଚାଲିଥିଲା । ସେ ମଙ୍ଗରାଜ ଅଭିଯୁକ୍ତ ନରହତ୍ୟା ଅପରାଧଟି ଯେ ମନଗଢା ଏହା ପ୍ରକଟ କରିଥିଲେ ଓ ନରହତ୍ୟା ଅପରାଧରୁ ତାଂକୁ ମୁକ୍ତି

ଦେଇ ନେତଗାଈକୁ ଆତ୍ମସାତ୍ କରିଥିବା ଅପରାଧରେ ଛ'ମାସ କାରଦଣ୍ଡ ଓ ପାଞ୍ଚଶତ ଟଂକା ଜୋରିମାନା କରିଥିଲେ । ଜୋରିମାନା ଅନାଦାୟେ ତିନିମାସ କାରାବାସ ।

**ଜେମା ମା'** - (ଛମାଣ ଆଠଗୁଣ୍ଠ) ଟାଙ୍ଗୀ ମାଉସୀ ପ୍ରସଙ୍ଗରେ ଜେମାମା'ର ଉଲ୍ଲେଖ ଅଛି । ରତନପୁରରେ ମାଉସୀଙ୍କ ଡୋଲି ଆସିଥିବା ବେଳେ ଜେମାମା' ବିବିଧ ଅକାଟ୍ୟ ଯୁକ୍ତି ଦେଖାଇ କହିଥିଲା, 'ଆଜି ସ୍ନାନ ପୂର୍ଣ୍ଣିମା, ଜମାଦାର' ସାହେବ ଘରକୁ ପରିବା ଭାର ନେଇଯାଉ ଅଛନ୍ତି ।

**ଜମ୍ବୁବାନ ମହନ୍ତ ମହାରାଜ** - (ଧୂଳିଆ ବାବା) ମର୍କଟଦାସଂକ ଉତ୍ତରାଧିକାରୀ ଭାବେ ଦେଗାଁର ହନୁମାନଜୀଙ୍କ ମହନ୍ତ ଭାବେ ଦାୟିତ୍ୱ ଗ୍ରହଣ । ମନ୍ଦିର ପଛପଟ ଦିଫାକୁଡ଼ିଆ ଶାହାଡ଼ା ଗଛ ପ୍ରକୃତରେ ତାଙ୍କର ଜିଭଛେଲା ଦାନ୍ତକାଠି । ଏହାଂକ ଅପୂର୍ବ ମହିମା ଫଳରେ ବୃକ୍ଷରୂପ ନେଇଥିଲା । ଗଛ ନାୟକ ବାଳର ଦାସ ଏହାଙ୍କ ଉତ୍ତରପୁରୁଷ ।

**ଜେଜୀମା** - (ରେବତୀ) ଶ୍ୟାମବନ୍ଧୁ ମହାନ୍ତିଙ୍କ ମା, ରେବତୀର ଜେଜୀମା । ପୁରୁଣାକାଳିଆ ଚିନ୍ତାଧାର ମଣିଷ । ରେବତୀ ପାଠ ପଢ଼ିବା ଶୁଣି ''ପାଠ କ'ଣ ଲୋ ? ମାଇକିନିଆ ଝିଅଟା ପାଠ କ'ଣ ?'' ରନ୍ଧାବଢ଼ା, ପିଠାପଣା କରି ଶିଖ, ଝୋଟିଦିଆ ଶିଖ, ଦହିମୁହାଁ ଶିଖ, ପାଠ କ'ଣ ? ବୋଲି କହିଥିଲା । ବାସୁଦେବ ଓ ରେବତୀ ପ୍ରସଙ୍ଗରେ 'ଜାତି' ସଂପର୍କରେ ଗୁରୁତ୍ୱ ଦେଇଛି । ନିଜ ପରିବାରର ବିପର୍ଯ୍ୟୟର କାରଣ ଭାବେ ରେବତୀର ପାଠପଢାକୁ ଦାୟୀ କରିଛି । ଚରିତ୍ରଟିର ମୃତ୍ୟୁ ପର୍ଯ୍ୟନ୍ତ ସେଇ ମାନସିକତା ଅପ୍ରତିହତ ରହିଚି । ପାରମ୍ପାରିକ ରକ୍ଷଣଶୀଳତାର ପ୍ରତିନିଧିତ୍ୱ କରୁଛି ଚରିତ୍ରଟି ।

**ଜୋନ୍ସ ସାହେବ** - (ମାମୁ) ପୂରାନାମ ଡବ୍ଲିଉ ଜୋନସ । ପଦବୀ ଜଏଣ୍ଟ ମାଜିଷ୍ଟ୍ରେଟ୍ । ବୟସ ତିରିଶ । କଡା ମିଜାଜ । କଲେକ୍ଟର ଡାଉସନଙ୍କ ଛୁଟିରେ ଯେ କଲେକ୍ଟର ଦାୟିତ୍ୱରେ ଥିଲେ । ଏହିସମୟରେ ନାଜର ନଟବରଙ୍କ ଉପରେ ନାନା କାରଣରୁ କ୍ଷିପ୍ତଥିଲେ । ନାଜର ବିଳମ୍ବରେ କଚେରୀକୁ ଆସୁଥିବା ଶୁଣି ସେ ଅଧିକ କ୍ଷିପ୍ତ ହୋଇଥିଲେ । କଲିକତାକୁ ଖଜଣାଟଂକା ସେପର୍ଯ୍ୟନ୍ତ ପଠାହୋଇନଥିବା ତଥା ନାଜର ନଟବରଙ୍କ ଘରୁ ଟଂକାଚୋରୀ ଏହାଙ୍କୁ କ୍ରୋଧମୂର୍ତ୍ତି କରିଥିଲା ଓ ନାଜରଂକୁ ଗିରଫକରି ଘଟଣାର ଅନୁସନ୍ଧାନ ପାଇଁ ପୁଲିସ ସାହେବଙ୍କୁ ସେ ପରାମର୍ଶ ଦେଇଥିଲେ । ନାଜରଙ୍କ ପତନର ଅପରତମ କାକତାଳୀୟ ଘଟଣାଭାବେ ଏହାଂକ କଲେକ୍ଟର ଦାୟିତ୍ୱ ବହନକୁ ଗ୍ରହଣ କରାଯାଇପାରେ ।

**ଡଗଲାସ** - (ଛମାଣ ଆଠଗୁଣ୍ଠ) ଇଂରେଜ ଡ଼ାକ୍ତର । ପିତା - ଇ.ଏଫ୍.ଜି ଏଇଚ ଡଗଲାସ । ବୟସ - ଚାଳିଶ, କଟକ ଜିଲ୍ଲାର ସିଭିଲସର୍ଜନ । ସାରିଆର ଲାସ ପୋଷ୍ଟମର୍ଟମ ଯେ କରିଥିଲେ ଓ ମତଦେଇଥିଲେ ଦୀର୍ଘକାଳ ଉପବାସ ଓ ମାନସିକ ଯନ୍ତ୍ରଣାରେ ସେ ମୃତ୍ୟୁବରଣ କରିଛନ୍ତି । ଏହାଙ୍କ ସାକ୍ଷ୍ୟଦାନ ମଙ୍ଗରାଜଂକ ନରହତ୍ୟା ଅଭିଯୋଗକୁ ଅସ୍ୱୀକାର କରୁଥିଲା । ଫଳରେ ମଂଗରାଜ ହତ୍ୟା -ଅଭିଯୋଗରୁ ମୁକ୍ତ ହୋଇଥିଲେ ।

**ଡାଉସନ୍** - (ମାମୁ) କଟକ ଜିଲ୍ଲାର ତତ୍କାଳୀନ କଲେକ୍ଟର । ପ୍ରଜାଂକ ହିତକାରୀ । ବହୁଦର୍ଶୀ ହାକିମ ଅଥଚ ଅମଲାମାନଙ୍କର ଠକ ପଣିଆ ବୁଝିବାକୁ ଅକ୍ଷମ । ତାଂକ ଆଖିରେ ନାଜର ନଟବର ଜଣେ ବିଶ୍ୱାସୀ ଆଉ କାମିକା ଲୋକ । ନାଜର ତାଂକର ଏଇ ମନୋଭାବର ଫାଇଦା ଉଠାଇ ତାଂକଠାରୁ ନିଜକୁ ଉତ୍ତର ରାୟ ଜମିଦାରୀର ତତ୍ତ୍ୱାବଧାରକ କରିନେଲେ । ଡାଉସନଂକ ଏ ଦୁର୍ବଳତା ଏକ ସମ୍ଭ୍ରାନ୍ତ ବଂଶକୁ ତଳିତଳାନ୍ତ କରିଦେଇଥିଲା ।

**ତାରାଦେଈ** - (ପ୍ରାୟଶ୍ଚିତ୍ତ) ରାଜୀବଲୋଚନର ବିଧବା ମାତା । ସଂକର୍ଷଣଙ୍କ ଉଆସରେ ପ୍ରତିପାଳିତା । ପୂର୍ବରୁ ପୋଇଲୀଭାବେ ଉଆସରେ ରହୁଥିଲେ । ସାଆନ୍ତାଣୀଙ୍କ ମୃତ୍ୟୁପରେ ଉଆସର ଅନ୍ତଃପୁରକଥା ବୁଝାବୁଝି କରୁଥିଲେ । ଏଇ କର୍ମୋନ୍ନତି ଯୋଗୁଁ ସେ ଅପର ପୋଇଲୀଙ୍କ ଈର୍ଷାର କାରଣ ହୋଇଥିଲେ ।

**ତାରାନାନୀ** - (ଅଧର୍ମବିତ୍ତ) ବିଜେ ନରହରିପୁର ଶାସନର ଦିବାକର ଦ୍ୱିବେଦୀଙ୍କ ମଝିଆଁ ନାନୀ । ଯାଙ୍କର ବିବାହ ନିମନ୍ତେ ମହାଜନ କୁବେର ସାହୁଠାରୁ ଦିବାକର ଦ୍ୱିବେଦୀଙ୍କ ବାପା ତାଳପତ୍ର ଗୁଜା ଲେଖିଦେଇ ଶହେ ଟଂକା କରଜ କରିଥିଲେ ।

**ତାରୀମା'** - (କମଳା ପ୍ରସାଦ ଗୋରାପ): କମଳାପ୍ରସାଦ ଗୋରାପର ମାଲିକ ବାବୁରାମ ହରି ନାୟକ ଘରେ ଦାସୀ । ଆପଣାର ପାଞ୍ଚମାସର ଦରମା ସାଢ଼େସାତଟଂକା ଆଗତୁରା ନେଇ କମଳା ପ୍ରସାଦ ଗୋରାପର ମାଝିକୁ ''ବଟମ୍ (ଆଗୁଆ ଟଂକା) ଦେଇଥିଲା ।''

**ତିରେଈ ତିହାଢ଼ି** - (ଅଧର୍ମ ବିତ୍ତ) ବିଜେ ନରହରିପୁର ଶାସନର ଶାସନୀ ବ୍ରାହ୍ମଣ । କୁବେର ସାହୁର ଶୋଷଣ ବିରୋଧରେ ଡକାଯାଇଥିବା ବ୍ରାହ୍ମଣ ସଭାରେ ଉପସ୍ଥିତ ଥାଇ ସାହୁ ବିରୁଦ୍ଧରେ ମତାମତ ଦେଇଥିଲେ ।

**ଦନେଇ ଦଳେଇ** - (ଅଧର୍ମ ବିତ୍ତ) ଘର ଲଙ୍ଗଳକଣ୍ଟା । ଗାଁ ମଧ୍ୟରେ ଥିଲାବାଲା ଲୋକ । ଘର ଆଗରେ ମନ୍ଦିର, ସଦାବର୍ତ୍ତ ଦିଅନ୍ତି । ଗାଁ ଲୋକେ ତାଙ୍କୁ ମାନନ୍ତି । ନାଆ ଦୁର୍ଘଟଣାପରେ ଯାଙ୍କ ଘରର ମାଇପିମାନଙ୍କଦ୍ୱାରା ତୁଠରେ ପଡ଼ିଥିବା ଅଚେତ୍ ପଦ୍ମାବତୀ ଉଦ୍ଧାର ପାଇଛି । ଏହାଂକ ଭାର୍ଯ୍ୟା ପଦ୍ମବତୀକୁ ଝିଅପରି ସ୍ନେହ ଦେଇଛନ୍ତି ଓ ଏହାଙ୍କ ପୁଅ' ପଦ୍ମାବତୀ ପ୍ରତି ଲୋଲୁପ ଦୃଷ୍ଟି ପକାଇଛି ।

**ଦନେଇ ମହାପାତ୍ର** - (ଅଧର୍ମ ବିତ୍ତ) ବିଜେ ନରହରିପୁର ଶାସନର ଶାସନୀ ବ୍ରାହ୍ମଣ' କୁବେର ସାହୁର ଶୋଷଣ ବିରୋଧରେ ଡକାଯାଇଥିବା ବ୍ରାହ୍ମଣସଭାରେ ଉପସ୍ଥିତଥାଇ ସାହୁ ବିରୁଦ୍ଧରେ ମତାମତ ଦେଲାବେଳେ କହିଥିଲେ ଯେ 'ଅଧର୍ମବିତ୍ତ ବଢେ ବହୁତ, ଯିବାବେଳେ ଯାଏ ମୂଳ ସହିତ' । କ୍ରୋଧ ପ୍ରକାଶ କରି କହିଥିଲେ 'ଆଜିଠୁ' ତିନିପକ୍ଷ, ତିନିମାସ, ତିନିବରଷ ମଧ୍ୟରେ କୁବେରର ସର୍ବନାଶ ହେବ । ଏହା ଶେଷରେ ସତ୍ୟ ହୋଇ ଫଳିଥିଲା ।

**ଦଣ୍ଡିଆ ପାତ୍ର** - (ବଗଲା ବଗୁଲୀ) ମକ୍ରାମପୁର ଗାଁର ଚଉକିଆ । ଏହାର ଝିଅ ଚେମୀ ଭୁଷଣ୍ଡପୁର ଗାଁର ଚଉକିଆ ବିଦିଆ ପାତ୍ରର ପୁଅ ସପ୍ନକୁ ବାହା ହୋଇଛି ।

**ଦଲେଇ ପୁଅ** - (ଅଧର୍ମ ବିତ୍ତ) ଲଙ୍ଗଳକଣ୍ଟା ଦନେଇ ଦଲେଇର ପୁଅ । ମଦ୍ୟପ, ନଷ୍ଟଚରିତ୍ର । ପଦ୍ମାବତୀର ସର୍ବନାଶ କରିବାକୁ ଇଚ୍ଛା କରିଥିଲା । ଏହା ଭୟରେ ପଦ୍ମାବତୀ ଆତ୍ମହତ୍ୟା କରିବାକୁଯାଇ ନଦୀକୂଳରେ ବିଦ୍ୟାଧରଦ୍ୱାରା ଉଦ୍ଧାର ପାଇଲା ।

**ଦାଶରଥି ଦାସ** - (ମାମୁ) କଟକ କିଲଟରୀ ମୁନ୍‌ସିଖାନାର ମୋହରୀର । ନିଜଘର ସୁମଡ଼ାପରଗଣା ଜଗତିସିଂହପୁର ନିକଟ ରୁକୁଣାଦେଈପୁର । ସାଧାରଣ ମୋହରୀରରୁ କର୍ମୋନ୍ନତିଘଟି ନାଜର ଭାବେ ଉତ୍ତମ ଜୀବନରେ ଅବସ୍ଥାପିତ । ଦୁଇପୁଅ ବାନାବର ଓ ନଟବର, କନ୍ୟା ଚାନ୍ଦମଣି । ଏହାଂକ ସ୍ନେହଶୀଳତା, ସତ୍ ଓ ଉଦାରତାର ଯଥେଷ୍ଟ ଚିତ୍ର ଉପନ୍ୟାସରେ ଲଭ୍ୟ । ରାଜଯକ୍ଷ୍ମା ଏହିବ୍ୟକ୍ତିଙ୍କ ଜୀବନାବସାନର କାରଣ ହୋଇଥିଲା ।

**ଦାସ ଜେନା** - (ଛମାଣ ଆଠଗୁଣ୍ଠ) ସଉତୁଣୀଆ ମଉଜାର ଚଉକିଆ । ମଂଗରାଜଙ୍କ କଚେରୀରେ ସେ ଓ ଗୋବରା ଜେନା ଶୋଇଥିବା ଚିତ୍ରିତ । ଏମାନଙ୍କ ଘୁଙ୍ଗୁଡି ଶବ୍ଦ ଯୋଗୁଁ ଘୁଷୁରିଭାବେ ଏମାନଙ୍କୁ ପ୍ରଥମେ ଫକୀରମୋହନ ଚିତ୍ରଣ କରିଥିଲେ ।

**ଦିଗମ୍ବର ଦାସ** - (ବାଲେଶ୍ୱରୀ ରାହାଜାନୀ) ରାଜଘାଟ ଥାନା ମୁନ୍‌ସିବାବୁ । ସବ-ଇନ୍‌ସପେକ୍ଟର ରାଜକିଶୋର ଚୌଧୁରୀଙ୍କୁ ସହାୟତା ଦେବାକୁ ନିଯୁକ୍ତି ପାଇଥିଲେ ।

**ଦିବାକର** - (ସୁନାବୋହୂ) କାକଟପୁର ଜମିଦାରଙ୍କ ନାଏବ । ପିତା ନବଘନ ଦାସ ଓ ମାଆ କମଳା ଦେଈ । ସ୍ତ୍ରୀ ଚଂପା । ଇଂରେଜୀ ପଢୁଆ ଯୁବକ । ଦେଖିବାକୁ ସୁନ୍ଦର । ଶିବୁର ବିବାହ ସ୍ଥିର କରିବାରେ ଇଏ ଯତ୍ନ କରିଥିଲେ ।

**ଦିବାକର ଦ୍ୱିବେଦୀ** - (ଅଧର୍ମବିତ୍ତ) ଘର ବିଜେ ନରହରିପୁର । ଶାସନୀ ବ୍ରାହ୍ମଣ । ଲକ୍ଷ୍ମଣ ମିଶ୍ରଙ୍କ ମାମୁ । କୁବେର ସାହୁ ଦୁଇଶହ ଟଂକାପାଇଁ ଯାଙ୍କର ଚାରିପାଞ୍ଚ ହଜାର ଟଂକାର ସମ୍ପତ୍ତି ସାତଶହ ଟଂକାରେ ନିଲାମ କରିଦେଇଛି । ଭଣଜା ଲକ୍ଷ୍ମଣ ମିଶ୍ରଙ୍କ ପରାମର୍ଶ କ୍ରମେ ଇଏ ସୁଧ ଜାଲରୁ ଓ ବିପଦରୁ ମୁକୁଳିଛନ୍ତି ।

**ଦୀନୁବାବୁ** - (ପ୍ରାୟଶ୍ଚିତ୍ତ) ଶ୍ୟାମଧଳ ସାମନ୍ତଙ୍କ ପୁଅ । ଗୋବିନ୍ଦର ସହପାଠୀ । ଗୋବିନ୍ଦର ମାନସିକ ଚାଞ୍ଚଲ୍ୟର କାରଣ ସଂପର୍କରେ ସଇତା ଏହାଙ୍କଠାରେ ଅନୁସନ୍ଧାନ କରି ନିରାଶ ହୋଇଥିଲା ।

**ଦୁର୍ଗାଦାସ ମହାନ୍ତି** - (ପ୍ରାୟଶ୍ଚିତ୍ତ) ଗୋବିନ୍ଦକୁ ମା'ର ଅସୁସ୍ଥତା କଥା ଜଣାଇ ଡାକି ଆସିଥିବା ଗୋପାଳପୁରର ମକଦ୍ଦମ ।

**ଦୁଃଶାସନ** - (ପ୍ରାୟଶ୍ଚିତ୍ତ) ଗୋପାଳପୁର ଗ୍ରାମର ନିବାସୀ ଓ ଶ୍ରୀକରଣ ବଂଶୀୟ । ବୈଷ୍ଣବଚରଣଙ୍କ ପତ୍ନୀ ହରିପ୍ରିୟାଙ୍କ ପିଲାଦିନର ଖେଳସାଥି । ହରିପ୍ରିୟାଙ୍କ ଦଶବର୍ଷ ବୟସ

ପର୍ଯ୍ୟନ୍ତ ଦିହେଁ ଏକତ୍ର ପଢ଼ାପଢ଼ି, ଖେଳାଖେଳି କରୁଥିଲେ । ବିବାହପରେ ସ୍ୱାମୀଙ୍କୁ ଜଣାଇ ହରିପ୍ରିୟା ଦୁଃଶାସନକୁ ନିଜର ତେଲହଳଦୀ ମୌଜା ଗୋବିନ୍ଦପୁରରେ ମକଦ୍ଦମ କରାଇ ଦେଇଥିଲେ । ସେଠି ଦୁଃଶାସନ ଟଂକାପଇସା ହେରଫେର କରିବାରୁ ତାକୁ ବୈଷ୍ଣବଚରଣ ଦୁମଦୁମପୁର ମୌଜାର ମକଦ୍ଦମ ତଳେ କରଣ କାମରେ ରଖାଇ ଦେଇଥିଲେ । ଦୁଃଶାସନ ଏଠି ମଧ୍ୟ ଅର୍ଥ ହେରଫେର କଲା । କେତେକ ପ୍ରଜାଂକଠାରୁ ଟଂକା ଅସୁଲ କରିନେଇ ପାଉତି ଦେଇନଥିଲା । ଦୁଃଶାସନ ଦାସ ଏହି କର୍ମରେ ଥିବା ବେଳେ ହଇଜାରେ ମୃତ୍ୟୁବରଣ କରିଥିଲା । ମୃତ୍ୟୁବେଳେ ଏହାର ଏକମାତ୍ର ପୁତ୍ର ସଦାନନ୍ଦ ଥିଲା ଚାରିବର୍ଷର ।

**ଦୂତୀ** - (ବିରେଇ ବିଶାଳ) ଗଳ୍ପର ନାୟକ ବିରେଇର ମା', ପିତେଇ ପାତ୍ରର ଅପା, ମକ୍ରୁ ବିଶାଳର ସ୍ତ୍ରୀ ।

**ଦେବକୀ** - (ରାଣ୍ଡୀପୁଅ ଅନନ୍ତା) ଅନନ୍ତାର ମା', ସୁବଳର ସ୍ତ୍ରୀ । ଗଳ୍ପରେ ଏହାର ପ୍ରଭାବ ଅପରିସୀମ । ସୁବଳ ଓ ଅନନ୍ତା ଉଭୟଂକ ଉପରେ ଏହାର କର୍ତ୍ତୃତ୍ୱଥିଲା ନିରଂକୁଶ । ବଳ ଓ ସାହସରେ ସେ ଥିଲା ଏକ ବ୍ୟତିକ୍ରମ । 'ନାହିତଳକୁ ଲୁଗାପିନ୍ଧିଥିଲେ ପେଟଟି ଛ ନଉତିଆ ଧାନ ଉଷୁଆଁ କଳାହାଣ୍ଡି ପରି ବାହାରି ପଡିଥାଏ । ହାତଗଣ୍ଠିଠାରୁ କହୁଣୀଯାଏ ଦଶବିଶାର ପିତଳବାହି ବଳା ଦୁଇ ହାତରେ ଲଗାଇ ଥାନ୍ତି । ନାକରେ ତୋଳାଏ ଓଜନର ସୁନାଗୁଣା ଚେପଟା ବିଶାଳ ନାକକୁ କାମୁଡ଼ି ଧରିଥାଏ । ବେକରେ ଦଶଦଶ ଗଣ୍ଡା ଗୋଡ଼ଲଗା ଟଂକାମାଳ ନାହିଯାଏ ଲମ୍ବି ପଡ଼ିଥାଏ ।ଦୁଇହାତରେ ଦିପୁଞ୍ଜା ଗେଣ୍ଡାପରି ଛାପ ମୁଦି ।' ଏହାର ଅନେକ ନାମ ଦେବକୀ ମହାକୁଡ଼ାଣୀ ବା ସିଂହାଣୀ ବ୍ୟତୀତ ଦେବକୀ ଗଉଡୁଣୀ, ମହାକୁଡ଼ାଣୀ, ତାଡ଼କାଅସୁରୀ, ନନ୍ଦିଘୋଷରଥ ଇତ୍ୟାଦି । ଗାଁ ଲୋକଙ୍କ ସହ ଅନନ୍ତାର ଦୋଷସତ୍ତ୍ୱେ ତା ପକ୍ଷ ନେଇ କଳିକରିବା, ଅବଧାନକୁ ମାରିଗୋଡ଼ାଇବା, ଅନନ୍ତାପାଇଁ ଏଣୁତେଣୁ ଖାଦ୍ୟ ପ୍ରସ୍ତୁତକରିବା ଭିତରେ ଏହାର ତୀବ୍ର ଓ ଅଂଧ ମାତୃତ୍ୱହିଁ ଦ୍ୟୋତିତ ହୁଏ । ନଈପାଣିରେ ପଡ଼ି ବୁଡ଼ିଯିବା ଭିତରେ ଏହାର ଜୀବନାବସାନ ଘଟିଛି ମାତ୍ର ପାଠକଂକ ପାଖରେ ଆପଣାର ବହୁବିଧ ଉଲ୍ଲେଖନୀୟତା ପାଇଁ ସେ ଅବିସ୍ମରଣୀୟ ହୋଇରହିଛି ।

**ଦେବୀ ଓଝା** - (ସଭ୍ୟଜମିଦାର) ରାଜୀବର ଅବଧାନ । ରାଜୀବର ଦୁଷ୍ଟାମିରେ ବିବ୍ରତ ହୋଇ ଗୋପାଳକୁ କହିଥିଲେ ରାଜୀବ ସବୁ ପାଠ ପଢ଼ିସାରିଲାଣି । ଗୋପାଳ ସନ୍ତୁଷ୍ଟ ହୋଇ ପାଟ ଯଥାରେ ଓଝାଙ୍କୁ ପ୍ରୀତ କରାଇଥିଲେ ।

**ଦେବୀବର ଓଝା** - (ସୁନାବୋହୂ) ସଂକର୍ଷଣ ମହାନ୍ତିଙ୍କ ପ୍ରଚେଷ୍ଟାରେ ଗଢ଼ିଉଠିଥିବା ଚାଟଶାଳୀର ଅବଧାନ । ବୟସ ଅଶୀ ପାଖାପାଖି । ମାଟିବଂଶ ଅବଧାନ । ଦରମା ମାସକୁ ନଗଦ ଦୁଇଟଂକା । ସକାଳଓଳି ମନ୍ଦିରରେ ପ୍ରସାଦସେବା ।

**ଧକେଇ ଜେନା** - (ଛମାଣ ଆଠଗୁଣ୍ଠ) ପି-ନାଙ୍ଗୁଡ଼ ଜେନା, ଜାତି-ପାଣ, ବୟସ-ଜଣାନାହିଁ, ନବମୀଦିନ ଅଧରାତିରେ ରାମଚନ୍ଦ୍ର ମଙ୍ଗରାଜଂକ ବାଉଁଶ ବାଡ଼ିରେ ସାରିଆକୁ ବାଡ଼ଉଥିବା କଥାରେ ଚାକ୍ଷ୍ୟୁସ ବିବରଣୀ ସେ ଦେଇଚି ଦାରୋଗାଙ୍କୁ । ଲୁଣ କିଣିବାକୁ ଆସି ରାତି ହୋଇଯିବାରୁ ଦୋକାନ ପିଣ୍ଡାରେ ଶୋଇଥିଲା । ଥରେ ଦୋକାନ ଚାଳରେ ପୁଣି ଭୁଲ ସଂଶୋଧନ କରି ଗୁମ୍ ଗୁମ୍ ଶବ୍ଦ ଶୁଣି ତା'ର କାରଣ ଅନୁସନ୍ଧାନ କରିବାକୁ ମଂଗରାଜଙ୍କ ଘର ପିଢ଼ାରେ ଚଢି ସେ ମାଡ଼ମରା ଦେଖିଥିଲା । ଗାଈକୁ ବହୁଥର ସେ ଦୁହିଁଥିବା କଥା ଓ ଗାଈର ନାମ ବଉଳା ତଥା ରାମଚନ୍ଦ୍ର ଏହାକୁ ସିନ୍ଧି କରି ଚୋରି କରି ଆଣିଥିବାର ଉଲ୍ଲେଖ କରିଛି ।

**ଧାଈ** - (ପାଠୋଇ ବୋହୂ) ଭାଲୁକପୋଷି ଗାଁ କୁ ଯାଇ ଗୋପାଳଚରଣ ପାଇଁ ପ୍ରସ୍ତାବିତ କନ୍ୟା ସରସ୍ୱତୀକୁ ଦେଖିଆସିଥିଲା ।

**ଧେଉଁକଳ ଭଗତ ଶୁଣ୍ଢୀ** - (ମାମୁ) ଜନୈକ ମହାଜନ । ଏହାଂକ ଠାରୁ ଅର୍ଥରଣ କରିବାକୁ ନାଜର ନଟବର ବିଶେଷ ଉଦ୍ୟମ କରୁଥିଲେ ।

**ଧେଉଁକଳ ସିଂ** - (ଲଛମା) ଘର-ସିଂହାନଗ୍ରାମ, ଜିଲ୍ଲା-ରୋହିଲାଅଖଣ୍ଡ । ଆପଣା କ୍ଷୁଦ୍ର ଗ୍ରାମର ଜମିଦାର । ଜାତିରେ କ୍ଷତ୍ରୀୟ । ଏହାଂକର ଏକମାତ୍ର ସଂତାନ - ଲଛମା ।

**ନକୁଳା** - (ମାଧ ମହାନ୍ତିଙ୍କ କନ୍ୟାସୁନା) ମହନ୍ତଙ୍କ ପାଖଲୋକ ।

ନଟବର - ନାଜର । ଉପନ୍ୟାସର ନାମକରଣର ହେତୁ । ଦାଶରଥି ଦାସଙ୍କ ପୁଅ । ଛାତ୍ରବସ୍ଥାରେ ଥିଲେ ମେଧାବୀ, ଶିକ୍ଷା ବିଷୟରେ ତତ୍‌ପର । ଏଥିସହ ସେ ଥିଲେ ଧୂର୍ତ୍ତ ଓ ଅର୍ଥଗୃଧ୍ନୁ । ପ୍ରଥମେ ମୁନ୍‌ସୀଖାନାର ତୌଜିନବିସ କାମ ଶିଖିଥିଲେ । ଏହାଙ୍କ ଚାଲିଚଳଣ ସନ୍ଦେହଜନକ ହେବାରୁ ଦାଶରଥି ଏହାଂକ ବିବାହରେ ଉତ୍ସାହୀ ହେଲେ ମାତ୍ର କୌଣସିଠାରେ କଥା ସ୍ଥିର ହୋଇପାରି ନଥିଲା । ଶେଷକୁ ଛକଡ଼ି ମହାନ୍ତିଙ୍କ କନ୍ୟା ସହ ଜାତକ ମେଳହେଲା । କନ୍ୟା ପାଖରୁ ଲକ୍ଷ୍ମୀଛାଡ଼ ହେବେନାଇଁ ଜାଣି ନଟବର ଏହାଂକୁ ନଦେଖି କାହାରିକୁ ଦେଖିବାକୁ ଯିବାକୁ ବାରଣ କରି ବିବାହ କଲେ । ଦାଶରଥିଙ୍କ ଅନୁରୋଧରେ ସାହେବ ନଟବରଙ୍କୁ ଗୁରୁତ୍ୱପୂର୍ଣ୍ଣ ନାଜର ପଦବୀ ଦେଇଥିଲେ । ଏଇଠାରୁ ନଟବର ଜୀବନରେ ପରିବର୍ତ୍ତନର ସୂତ୍ରପାତ ଘଟିଥିଲା । ଅର୍ଥ, କ୍ଷମତା ଓ ଲୋକବଳର ସମନ୍ୱୟରେ ନଟବର ନିଜକୁ ଛୋଟକାଟିଆ ହାକିମ ମନେ କରିଥିଲେ । ନିଜର ଭିଣୋଇ ପ୍ରତାପଉଦିତ ମଲ୍ଲଂକ ମୃତ୍ୟୁପରେ ଏହାଙ୍କ ଶଠତା ଓ ଧୂର୍ତ୍ତତାର ବିପୁଳ ବିକାଶ ଘଟିଚି ଓ ସେ ଜମିଦାରୀ ପରିଚାଳନାର ଦାୟିତ୍ୱ ଗ୍ରହଣ କରି ଅପରିସୀମ ଅର୍ଥର ଅଧିକାରୀ ହୋଇଥିଲେ । ଭଣଜା ପଢ଼ାପଢ଼ି ପାଇଁ କଟକସ୍ଥ ଏହାଙ୍କ ଘରେ ଥିଲା ଓ ବାରବାଂର ନାନାଭାବେ ଅପମାନିତ ଓ ନିର୍ଯ୍ୟାତିତ ହେଉଥିଲା । ନିଜ ଭଉଣୀର ଜମିଦାରୀ ଅପହରଣର ଚକ୍ରାନ୍ତ ଏ ଚରିତ୍ରର ଖଳତ୍ୱ କିପରି ନୀଚସ୍ତରୀୟ ଥିଲା ତାହା ପ୍ରତିପାଦନ କରେ । ପୋଇଲୀ ଚିତ୍ରକଳା ଥିଲା ଏହାଙ୍କ ଉପପତ୍ନୀ ଓ ଖଳ-କର୍ମର ଉତ୍ସାହଦାତ୍ରୀ । ନାଜରଙ୍କ ଶୋଷଣ ଓ ଚକ୍ରାନ୍ତର ଅନ୍ତ ବିସ୍ମୟକର ଓ ଅପ୍ରତ୍ୟାଶିତ ଏହାର ଅନ୍ତ ଘଟିଚି । ସେ କାରାଦଣ୍ଡିତ ହୋଇଛନ୍ତି ।

ତାଙ୍କର ଜମିଦାର ହେବା ସ୍ୱପ୍ନ ସହସା ତିରୋହିତ ହୋଇଚି, ଅର୍ଥ ଓ ଗହଣାଦି ସରକାର ଜବତ୍ କରିଛନ୍ତି, ସାମାଜିକ ପ୍ରତିଷ୍ଠା ହୋଇଛି ଭୂଲୁଣ୍ଠିତ । ନାଜର ନଟବରଙ୍କ ପ୍ରତିପତ୍ତି ଓ କ୍ଷମତାର ଅନ୍ତ ଭିତରେ ଜନ୍ମନିଏ ଏକ ଅନୁତପ୍ତ ନଟବର ।

**ନଟବର ଘନଶ୍ୟାମ ବାଘସିଂହ** - (ଛମାଣ ଆଠଗୁଣ୍ଠ) ବାଘସିଂହ ବଂଶର ସମସ୍ତ ସମ୍ପତ୍ତି ଇଏ ଉଡ଼ାଇ ଦେଇଥିଲେ । ନିଜେ ଥିଲେ ସାହାଖର୍ଚ୍ଚୀ । ଦାନଧର୍ମ କରୁଥିଲେ । ଖାଉଥିଲେ, ଖୁଆଉଥିଲେ । ସେ ଋଣ ଭାରରେ ବୁଡ଼ି ରହିଥିଲେ । ତାଙ୍କ ପାଖରେ କେବଳ ଖଣ୍ଡାୟତ ମହାଲଟି ରହିଥିଲା । ଏହାଙ୍କର ଥିଲେ ଚାରିପୁଅ । ଜ୍ୟେଷ୍ଠ ଭୀମସେନ ବାଘସିଂହ, ଅନ୍ୟ ତିନିପୁଅ ପ୍ରହ୍ଲାଦ ମଲ୍ଲ, କୁତୁଳି ମଲ୍ଲ, ବଳରାମ ମଲ୍ଲ । ପୁଅମାନେ ଉଡ଼ାବାଜ ନୁହନ୍ତି ବୋଲି ସୂଚିତ ।

**ନରସିଂହ ମିଶ୍ର** - (କମଳା ପ୍ରସାଦ ଗୋରାପ) କୌଣସି ଏକ ଜାହାଜ ଅନୁକୂଳକରି ସମୁଦ୍ର ବାଣିଜ୍ୟକୁ ଯିବାବେଳେ ଏ ପୂଜା କରି ଲକ୍ଷ୍ୟ ସ୍ଥିର କରିଥିଲେ ଓ ଚଣ୍ଡୀପାଠ କରିବା ପାଇଁ ଗୁଆ ନେଇଥିଲେ ।

**ନରହରି** - (ମାମୁ) ପ୍ରତାପ ରଦିତ ମଲ୍ଲଙ୍କ ବଡ଼ ପୁଅ । ଶାନ୍ତ, ସରଳ ଓ ମେଧାବୀ । ବୃତ୍ତି ପାଇ ସେ ଇଂରାଜୀ ପଢ଼ିବାକୁ କଟକ ଆସେ ଓ ଏହିଠାରୁ ଏ ଚରିତ୍ରକୁ ନିକଟରୁ ଦେଖିବାର ସୁଯୋଗ ସାଙ୍ଗମାନଙ୍କର ଘଟେ । ଅତ୍ୟନ୍ତ ଲଜ୍ଜାଶୀଳ, ନିରୀହ ଏ ତରୁଣ ଏପରି ଯତ୍ନପାଳିତ ଯେ ନାଜରଙ୍କ ଘରେ ନିଜକୁ ଅବହେଳିତ ଜାଣିକରି ସୁଦ୍ଧା କହି ପାରିନାହିଁ । ବୟସରେ କମ୍ ହେଲେ ବି ଏହାର ବିଚାର ଶକ୍ତି, ବିବେକ ପରିଚାଳିତ । ଉଆସରେ ଧାଇମା, ମା ଓ ଅନ୍ୟାନ୍ୟ ପରିଜନ ବର୍ଗ ଆର୍ଥିକ ଅସୁବିଧାରେ ଅଛନ୍ତି ଜାଣି ବୃତ୍ତିପାଇଥିବା ସବୁ ଅର୍ଥ ସେ ଘରକୁ ପଠାଇ ଦେଇଚି । ଏହି ଚରିତ୍ର ମାଧ୍ୟମରେ ନାଜରଙ୍କ ସ୍ୱାର୍ଥପର ତାର ଏକ ବିଶେଷ ଅଂଶ ଅନୁଭବ କରାଯାଇପାରେ ।

**ନରହରି ପଣ୍ଡା** - (ପୁନର୍ମୂଷିକୋଭବ) ମକ୍ରାମପୁର ଗାଁର ପୁରୋହିତ କିଣାରାମର ରୋଷେଇବାସ କରିଦିଅନ୍ତି ।

**ନବଘନ ଉତ୍ତର ରାୟ** - (ମାମୁ) ବୀରବର ମଲ୍ଲ ମର୍ଦ୍ଦରାଜ ଉତ୍ତରରାୟଙ୍କ ବଂଶଧର । ଏହାଙ୍କ ଚାରିପୁଅ - ପାର୍ଥ ସାରଥି ବାଘସିଂହ, ଭୀମସେନ୍ ହରିଚନ୍ଦନ, ଶତ୍ରୁଘ୍ନ ଭ୍ରମରବର ଓ ସନାତନ ଅରିଦମନ । ନିଜର ସମସ୍ତ ଜାଇଗିରି ସଂପତ୍ତି ସମାନ ଚାରି ଭାଗରେ ବିଭକ୍ତ କରି ଚାରି ପୁଅକୁ ସେ ଦେଇଥିଲେ ଓ ସର୍ତ୍ତଥିଲା କୌଣସି ଭାଇ ନିଃସନ୍ତାନଭାବେ ପରଲୋକ ଗମନ କଲେ ତା'ଭାଗ ଜ୍ୟେଷ୍ଠ ଭ୍ରାତା ପାଖକୁ ଯିବ । ଦ୍ୱିତୀୟ ଓ ତୃତୀୟ ଭାଇଂକ ସଂପତ୍ତି ଏହି ଭାବେ ଜ୍ୟେଷ୍ଠ ଭାଇଙ୍କ ପାଖକୁ ଆସିଥିଲା ।

**ନବଘନ ଦାସ** - (ସୁନାବୋହୂ) ପୁଲିସ୍ ଜମାଦାର ଥିଲେ । ଦିବାକରର ବାପା ।

**ନବଘନ ଦାସ** - (ଗାରୁଡ଼ି ମନ୍ତ୍ର) ବୃଦ୍ଧ, ନବଘନ ଦାସ ସାନ୍ତାଣୀଙ୍କ ମାମୁଁ ମଦନର ଅଜା । ଦାସେ 'ସାନ୍ତ,ଙ୍କ ଘର ଛାମୁକରଣ' । କନ୍ୟା ଠିକଣା ହୋଇସାରିଥିବା କଥା କହି ମଦନର ପ୍ରତିକ୍ରିୟା ଜାଣିବାକୁ ସେ କଟକକୁ ଆସିଥିଲେ ।

**ନବଘନ ଶ୍ୟାମସୁନ୍ଦର ରାଉତ** - (କାଳିକା ପ୍ରସାଦ ଗୋରାପ) ଜଳଦସ୍ୟୁ ବିରୋଧୀ ସଭାରେ ଉପରିତ ଥାଇ ଫିରିଙ୍ଗୀସହ କାରବାର ବଂଦକରିବାକୁ ତଥା ସେମାନଂକୁ ତଡ଼ିବାକୁ ପ୍ରସାଦ ଦେଇଥିଲେ ।

**ନୟନତାରା ଦୁଃଖ ପାଶୋରା** - (ସଭ୍ୟଜମିଦାର) ଆସାମରେ କାମ କରୁଥିବା ଜନୈକ ଅଜ୍ଞାତ କୁଳଶୀଳ କୁଲି, ପରେ ସବୁ ମକ୍ରା ମଳିକର ଝିଅ । ବିଳମ୍ବରେ ଜାତ ହୋଇଥିବାରୁ ମା'ସ୍ନେହରେ ଡାକୁଥିଲେ ନୟନତାରା ଓ ବାପା ଡାକୁଥିଲେ ଦୁଃଖପାଶୋରା । ଚା'ବଗିଚାର ସ୍କଟିସ ବାପଟିଷ୍ଟ ଅର୍ଫେନ ବାଳିକା ସ୍କୁଲରେ ଚାରିବର୍ଷ ପର୍ଯ୍ୟନ୍ତ ପଢ଼ିଥିବା ତଥାକଥିତ ଶିକ୍ଷିତା, ସଭ୍ୟା ଓ ସ୍ୱାଧୀନ ଝିଅ । ଗଳ୍ପର ନାୟକ ଜମିଦାର ରାଜୀବଲୋଚନର ପତ୍ନୀ । ଏହାର ନବ୍ୟ ସଭ୍ୟ ଆଚରଣ ଗ୍ରାମ୍ୟ ସମାଜରେ ଏହାକୁ ଉପହସିତ କରାଇଥିଲା । ଶାଶୁଙ୍କ ସହିତ ଏହି କାରଣରୁ ଏହାର ସୌହାର୍ଦ୍ଦ୍ୟ ସ୍ଥାପିତ ହୋଇପାରିନଥିଲା । ଇଂରେଜୀ ସଂସ୍କୃତି ଓ ଇଂରାଜୀ ଶିକ୍ଷା ପ୍ରତି ସେ ଥିଲା ଅଧିକ ଦୁର୍ବଳ । ଜମିଦାର-ପତ୍ନୀ ହେବାର ଅପ୍ରତ୍ୟାଶିତ ସୌଭାଗ୍ୟ ଏହାକୁ କରିଥିଲା ଅହଂକାରୀ । ଅପରିଣାମଦର୍ଶିତା ହେତୁ ସ୍ୱାମୀ ଋଣଗ୍ରସ୍ତ ହୋଇ ଆସାମ ଚାଲିଯାଇ ଖାନସମା ଭାବେ ଜୀବିକା ନିର୍ବାହ କରିଥିଲେ ଓ ସେ ହୋଇଥିଲା ଖାନସମା-ପତ୍ନୀ ।

**ନାକଫୋଡ଼ିଆମା** - (ମାମୁ) କଟକ ସହରର ଜନୈକ ଦରିଦ୍ର ସ୍ତ୍ରୀ ଲୋକଟିଏ । କୋଡ଼ିଏ ବରଷିଆ ଭେଣ୍ଡା ପୁଅଟା ମରିଯିବା ପରେ ସଂସାରରେ ନିରାଶ୍ରୟ ହୋଇ ପଡ଼ିଥିଲେ । କଟକରେ ଝିଅବୋହୂଙ୍କ ଜୁଡ଼ା ବାଂଧିବା ଥିଲା ତା'ର କାମ । ସେଇଥିରେ ତା'ର ଗୁଜୁରାଣ ମେଣ୍ଟାଉଥିଲା । ସେ ଥିଲା ଅନର୍ଗଳ ବଚନା, ଦ୍ୱାରଦ୍ୱାର ବିହାରିଣୀ', ନାଜରାଣୀଂକୁ ଜୁଡ଼ା କରିବାରେ ତା'ର ନିଯୁକ୍ତି ହୋଇଥିଲା । ଚିତ୍ରକଳାର ମାଡ଼ ପରେ ସେ ଆଉ ନାଜରଙ୍କ ଉଆସକୁ ଆସିନଥିଲା ।

**ନାକଫୋଡ଼ି ନାୟକ** - (କାଳିକା ପ୍ରସାଦ ଗୋରାପ) ରାମପ୍ରସାଦ ଗୋରାପର ମାଲିକ । ଜଳଦସ୍ୟୁ ବିରୋଧି ସଭାରେ ଉପସ୍ଥିତ ବ୍ୟକ୍ତି ।

**ନାରାୟଣ ମିଶ୍ର** - (ପୁନର୍ମୂଷିକୋଭବ) ମକ୍ରାମପୁରର ପୁରୋହିତ ବ୍ରାହ୍ମଣ । ରାମା ଭଣ୍ଡାରି ବନ୍ଧା ହୋଇ ଥିବାରୁ ତାକୁ ଖଲାସ କରିଦେବାକୁ କିଣାରାମ କନେଷ୍ଟବଳକୁ ଅନୁରୋଧ କରି ଦଶଟଂକା ଲାଞ୍ଚଦେବାର ସୂଚନା ମଧ୍ୟ ଦେଇଥିଲେ ।

**ନାରିକେଳି ମେଲି ଯୋଗେୟା** - (ବାଲେଶ୍ୱରୀ ରାହାଜାନୀ) ତୈଲଙ୍ଗୀ ମହାଜନ । ପ୍ରଥମେ ଲବଣ କଣ୍ଟ୍ରାକ୍ଟର ପରେ ପରେ ବିପୁଳ ଧନୀ । ଏହାଙ୍କ ଡାକ ପାଲିଙ୍କି ଲୁଣ୍ଠନର ଚକ୍ରାନ୍ତ ଡ଼କାୟତ ମନେକରିଥିଲେ । ମାତ୍ର ଏହାଙ୍କ ଯିବା ରହିତ ହେବା ଓ ସେହି ସମୟରେ ରେମ୍ପିନୀ ସାହେବ ଯାଉଥିବାରୁ, ସାହେବ ଡକାୟତ ହାବୁଡ଼ରେ ପଡ଼ିଲେ ।

**ନାଲୁମିର୍ଦ୍ଧା** - (ବାଲେଶ୍ୱରୀ ରାହାଜାନୀ) ଡକୟତ ଦଳର ଅନ୍ୟତମ ସର୍ଦ୍ଧାର । ସେ 'ଦୀର୍ଘାକାର, ଖୁବ୍‌ବଳିଷ୍ଠ । ଚକ୍ଷୁଦୁଇଟା କାକଡ଼ିମ୍ବ ପରି ବୃହତ୍ ଓ ରକ୍ତବର୍ଣ୍ଣ । ରାକ୍ଷସବତ୍ ଆକୃତି, ଭୟଙ୍କର ।' ଇନ୍‌ସପେକ୍ଟର ଶାରଦା ପ୍ରସାଦ ବୋଷ ଛଦ୍ମଜ୍ୟୋତିଷ ଭାବେଆସି ଏହାରି ସହ କଥାବାର୍ତ୍ତା କରିଥିଲେ । ପୁଲିସ କନେଷ୍ଟବଳ ଦୁଇଜଣ ଛଦ୍ମ ଡକାୟତଭାବେ ଆସି ଏହାକୁ ପ୍ରଭାବିତ କରିଥିଲେ ।

ଏହାର ଆଚରଣଗତ ବିଶେଷ କୌଣସି ବର୍ଣ୍ଣନା ନାହିଁ । ଅନ୍ୟଡକାୟତ ମାନେ ଧରା ପଡ଼ିଥିବା ବେଳେ ସେ ଖସିଯାଇଥିବା ଏହାର ସତର୍କତା ଓ ଚତୁରତାର ପ୍ରମାଣ ।

**ନିଧି ପାଣିଗ୍ରାହୀ** - (ପ୍ରାୟଶ୍ଚିତ୍ତ) ଗୋବିନ୍ଦ ଓ ସଦାନନ୍ଦ ପାଖରେ ଥିବା ବୈଷ୍ଣବଚରଣଙ୍କ ଉଆସର ପାଚକ । ସଦାନନ୍ଦର ପ୍ରରୋଚନାରେ ଗୋବିନ୍ଦ ଶ୍ୱଶୁରଘରକୁ ଯିବାବେଳେ ଏହାର ନିଷେଧ ଯୋଗୁଁ ସଦାନନ୍ଦ ଏହାକୁ ତାଛଲ୍ୟ କରିଥିଲା "A bloody fool" ଭାବେ ।

**ନିମା** - (ସୁନାବୋହୂ) ନାୟିକା । ଶିବସୁନ୍ଦରଙ୍କ ସ୍ତ୍ରୀ । 'କନ୍ୟା ଦେହର ବର୍ଣ୍ଣ ଟିକିଏ, କଳା' । ଇଏ ଘରର ସାଆନ୍ତାଣୀ ବୋଲି ନିଜକୁ ମନେକରି କୌଣସି କାମଦାମ କରୁନଥିଲା । ଫଳରେ ପାରିବାରିକ ଅଶାନ୍ତିର କାରଣ ହୋଇଥିଲା । ନଣନ୍ଦ ସହିତ ଏହି କାରଣରୁ ତାର ବଚସା ହେଉଥିଲା । ଏହାର ଆଚରଣଗତ ପରିବର୍ତ୍ତନପାଇଁ ସ୍ୱାମୀ, ନଣନ୍ଦ ଆଦି ଯୋଜନା କରିଥିଲେ ଓ ଶିବୁର ପୁନର୍ବିବାହର ନାଟକ ରଚନା କରିଥିଲେ । ଏହା ସଫଳ ହୋଇଥିଲା । 'ତହିଁ ଆର ଦିନ କାଉ କା କରିବାବେଳକୁ ବୋହୂ ବାସିପାଇଟି ସାରି ବସିଛି । ଟିକିଏ ଖରା ଉଠିଲା ବେଳକୁ ଚମ୍ପା ଆସି ଦେଖିଲା, ସବୁ ବାସି ପାଇଟି ସରିଗଲାଣି '। ଗଳ୍ପଟି ଏହାରି ପରିବର୍ତନକୁ ଭିତ୍ତିକରି ରଚିତ । ଗଳ୍ପର କେନ୍ଦ୍ରୀୟ ଚରିତ୍ର ଏହାରି ପରିବର୍ତ୍ତିତ ଗୁଣ ସୂଚାଇଥାଏ ଗଳ୍ପର ନାମକରଣ ।

**ନିମା** - (ପ୍ରାୟଶ୍ଚିତ୍ତ) ସମସରପୁର ଉଆସର ପୋଇଲୀ । ଇନ୍ଦୁମତୀର ଫୁଲ ଗଛରେ ସେ ଏକଦା ପାଣି ଦେଇନଥିବାରୁ 'ହୂର-ହୂର-ମରିଯା' ବୋଲି ଇନ୍ଦୁ ଗାଳି ଦେଇଥିଲା । ଶେଷଦିନ ଇନ୍ଦୁମତୀ ଏହାଙ୍କ ଠାରୁ କ୍ଷମା ମାଗିଥିଲା ଓ ସେ ତାର ଏପରି ବ୍ୟବହାରରେ କାନ୍ଦିପକାଇଥିଲା ।

**ନୀଳମଣି ଚମ୍ପତିରାୟ** - (ମାମୁଁ) ଦାରୋଗା । ନଟବର ଆଦିଙ୍କ ବିରୁଦ୍ଧରେ ଅଭିଯୋଗପତ୍ର ଦାଖଲ କରିଥିଲେ ମାଜିଷ୍ଟ୍ରେଟଙ୍କ ପାଖରେ ।

**ନେତ** - (ଛମାଣ ଆଠଗୁଣ୍ଠ) ଗାଈଟିଏ । ସାରିଆ, ଭଗିଆଙ୍କ ଝିଅ ପ୍ରାୟ ରହିଥାଏ । ଏହା ପଛରେ ସାରିଆ ଦିନରାତି ଲାଗିଥାଏ । ନେତ ବି ସାରିଆ ସହ ଘନିଷ୍ଠ ହୋଇ ରହିଥାଏ । ସାରିଆ, ଭଗିଆଙ୍କ ସହ ଗୋଟିଏ ଘରେ ନେତ ବି ଶୁଏ । ଏହି ଦଂପତିଙ୍କର ତା'ପ୍ରତିଥିବା ବାତ୍ସଲ୍ୟ ଓ ଆନ୍ତରିକତା ଏଥିରୁ ଅନୁମିତ । ଏହାର ରୂପ ଏପରି - 'ସର୍ବାଙ୍ଗ କଳା, ମୁଣ୍ଡରେ ଚାନ୍ଦ' । 'କାଳି ଗାଈ ମୁଣ୍ଡରେ ଚାନ୍ଦ, ତାକୁ ଆଣି ଶ୍ରୀଘରେ ବାନ୍ଧ' । ଶିଙ୍ଗ ପାତଳ ଆଉ ଝାମ୍ପରା, ଲଞ୍ଜସରୁ ଖୁବ୍ ଲମ୍ବା । ଲାଞ୍ଜ ଆଗରେ ଚଅଁର ପରି ପେଣ୍ଡାବାଳ ଭୂଇଁରେ ଲୋଟିଯାଏ । ପିଠିଟି

ନୂଆଣ । ମୁଠୁଣିକରୁ କିଛି ଊଣା ଚୌଡ଼ା, ପିଚାଟି ଚୌଡ଼ା, ହାକୁଡ଼ିଟିଏ ସାନ ପାଣିକଖାରୁ ପରି ପିଠି ଆଡ଼କୁ ନଇ ପଡ଼ିଛି । ବେକର ଥଳୀଟା ଆଉ ଗାଈଠାରୁ କିଛି ବେଲି ଝୁଲୁଛି, ଦୁଧନାଡ଼ଟା ଗୋଟିଏ ପାଳ ଦଉଡ଼ିପରି ମୋଟ, ପହ୍ନାକଥା କଣ କହିବୁଁ ? 'ପୟୋଧରୀ ଭୂତ - ଚତୁଃ ସମୁଦ୍ରାଃ' । ନେତ କଳିଙ୍ଗା ଗାଈପରି ଖୁବ୍ ଯେ ଗୋଟିଏ ଉଞ୍ଚ, ତାହା ନୁହେଁ, ମଧଭଳି ।' ଦୁଇ ଓଳି ପାଞ୍ଚସେରରୁ ଊଣା ଦୁଧ ଦେଉ ନଥିବା କଥା ମଙ୍ଗରାଜଙ୍କ ଦରବାରର ଆଲୋଚନାରୁ ଜଣାଯାଏ । ନେତ ଉପନ୍ୟାସରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ନେତର ଗୁଣ ଶୁଣି ସେଇ ଯେ ମଙ୍ଗରାଜଙ୍କ ପାଟିରୁ ବାହାରି ପଡ଼ିଥିଲା, 'ଏଁ ! ତନ୍ତୀବାପୁଡ଼ାର ଏମନ୍ତ ଗାଈ'- ତାହା ତନ୍ତୀ ଦମ୍ପତିଙ୍କ ଭାଗ୍ୟ ବିପର୍ଯ୍ୟୟର ଆଦ୍ୟସୂଚନା ହୋଇ ଦେଖାଦେଇଥିଲା । ମଙ୍ଗରାଜଙ୍କ ରେରେକାର ନେତ ପାଖରୁ ହିଁ ଆରମ୍ଭ । ପରବର୍ତ୍ତୀ ସମୟରେ ଚମ୍ପା ମଧ ସ୍ୱୀକାର କରିଥିଲା - 'ଜମିହେଉ, ଘରହେଉ, ଯାହାହେଉ, ସେହି ଗାଈଟି ଲାଗି ମୁଁ ଏତେ କଥା କଲି,'

ପଦନବିନାୟକ - (ପ୍ରାୟଶ୍ଚିତ୍ତ) ଗୋବିନ୍ଦର କୁଟୁମ୍ବୀ ଅଜା । ସେ ଗୋବିନ୍ଦ ଓ ସଦାନନ୍ଦଙ୍କୁ ବିବାହ ସଂପର୍କରେ ମତ ବୁଝିବାକୁ ଆସିଥିଲେ ।

ପଦୀ - (ସଭ୍ୟ ଜମିଦାର) ରାଜୀବ ଘର ପୁରୁଣା ପୋଇଲୀ । ହାଣ୍ଡିଏ ଗୋବର ପାଣି ଧରି ରୋଷଘର ଚୁଲୀ ଲିପୁଥିଲା । ମିସେସ୍ ମହାପାତ୍ର ଓରଫ ନୟନତାରାଦୁଃଖପାଶୋରା ଗୋଡ଼ରେ ଜୋତାପିନ୍ଧି ପଶିବାର ଦେଖି 'ହାଣ୍ଡିଶାଳ ମାରୁଗଲା' କହି ସବୁଦିନ ପାଇଁ ମହାପାତ୍ର ଉଆସ ଛାଡ଼ି ପଳାଇଥିଲା ।

ପଦୀ **ଭଣ୍ଡାରୁଣୀ** - (ମାଧ ମହାନ୍ତିଙ୍କ କନ୍ୟାସୁନା) ମଧୁପୁର ଗାଁର ଏକୁଟିଆ ବିଧବା ଭଣ୍ଡାରୁଣୀ । ଏକମାତ୍ର ଝିଅ ବାହା ହୋଇଗଲାଣି । ସେ ଲୋକଙ୍କର ନଖ କାଟେ, ଅଳତା ଲଗାଏ । ସାହସୀ, ଚତୁରୀ ବୁଦ୍ଧିମତୀ । ମାଧ ମହାନ୍ତି ଝିଅ ମାଳତୀକୁ ଚତୁରତାରେ ମହାପ୍ରସାଦ ଝିଅ କରିଛି । ମହନ୍ତଙ୍କ ନିର୍ଦ୍ଦେଶରେ ମଠର କୋଠ ଚାକର ବିନୋଦିଆ ପାଇଁ ପ୍ରବର୍ତ୍ତାଇବାକୁ ଯାଇ ମିଛରେ ଠାକୁର ସ୍ୱପ୍ନାଦେଶ ଦେଇଥିବା କାହାଣୀ ଗଢ଼ିଛି । ମାଳତୀର ଶୁଭାକାଂକ୍ଷୀ । ମାଧ ମହାନ୍ତିଙ୍କୁ କଥାରେ ବଶୀଭୂତ କରିଛି ଓ ତେଲ ହଳଦୀ 'ଜଳପାଣି ଲୁଗା' ଦେଇ ବିଶ୍ୱାସଭାଜନ ହୋଇଛି । ମହନ୍ତଙ୍କ ଷଡ଼ଯନ୍ତ୍ରର ଇଏ ମୁଖ୍ୟ ସହଯୋଗୀ ।

ପଦୀ - (ଗାରୁଡ଼ିମନ୍ତ୍ର) ମଦନମୋହନଙ୍କ ସ୍ତ୍ରୀର ଖାସ୍ ଦାସୀ । 'ଗାଁରେ ତାହାର ନାମଡ଼ାକ । ଗାଁ ମଧରେ କୌଣସି ସାଆନ୍ତଙ୍କ ଝିଅ ବିଭାଘର, ଦଶପନ୍ଦର ଦିନ ଆଗରୁ ମା, ସାନ୍ତାଣୀ ପଦୀକୁ ଡାକିନେଇ ଝିଅ ବାହାକୁ ଧରିକି କଥା କହି କିପରି ବାହୁନିବ - ଶାଶୁଘରେ କେତେ ଓଢ଼ଣା ପକାଇ କିପରି ନଇଁ ନଇଁ ଚାଲିବ, କିପରି ଚୁ-ଚୁ କଥା କହିବ, ଏସବୁ ସଦ୍‌ଗୁଣ ଶିଖାଇବାକୁ ପଦୀକୁ କେହି ବଳିଯିବନାହିଁ ।' ଏହିପଦୀ ପାଖରୁ ସ୍ତ୍ରୀକୁ ମୁକ୍ତକରି ଆପଣା ମନମୁତାବକ ଗଢ଼ିବାକୁ ମଦନମୋହନ ଚେଷ୍ଟା କରିଥିଲେ । ପଦୀ ଗଳ୍ପର ପରିଣତି ବେଳେ 'ସାପୁଆ ମୁଲକରେ' ନରହିବାକୁ ସ୍ଥିର କରି ପଳାଇଯାଇଥିଲା ।

**ପଦ୍ମାବତୀ** - (ପାଠୋଇ ବୋହୂ) ମୁକ୍ତାର ଗୋପାଳ ଚରଣଙ୍କ ମା । ପେସ୍କାର ରାଜକିଆର ବାବୁଙ୍କ ମା' ର ବାଂଧବୀ । ବିଧବା । ଗାଁରେ ପାଞ୍ଚ ପାଇଟିକରି ପୁଅକୁ ମଣିଷ କରିଥିଲେ । ନିଃସ୍ୱାର୍ଥପର । ପୁଅର ଅର୍ଥ ବରବାଦ କରିବା ବିପକ୍ଷରେ । ପୂଜାରୀ, ଦାସୀ ଇତ୍ୟାଦି ରଖିବାର ତେଣୁ ପରିପନ୍ଥୀ । ପୁଅର ଯତ୍ନ ଓ ମଙ୍ଗଳପାଇଁ ତତ୍ପର । ପୁଅର ବିବାହପରେ ଏହାଙ୍କର ଦେହାନ୍ତ ହୋଇଥିଲା ।

**ପଦ୍ମାବତୀ** - (ଅଧର୍ମବିତ୍ତ) ବୌଦ ଇଲାକାର ହରିପୁର ଗାଁର ମହାଜନ ଯୁଧିଷ୍ଠିର ସାହୁର କନ୍ୟା । ମକ୍ରାମପୁରର କୁବେର ସାହୁର ପୁତ୍ର ବିଦ୍ୟାଧରର ପତ୍ନୀ । ପିତୃ ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରିଣୀ । ବୟସ ପନ୍ଦର ଷୋହଳ । ରୂପବତୀ, ଗୁଣବତୀ, ପତିବ୍ରତା । ବାପାଙ୍କଠାରୁ ଦଶଖଣ୍ଡି ନାଆ ସହ ଅନ୍ୟାନ୍ୟ ଯାନିଯୌତୁକ ମିଶାଇ ପଚାଶହଜାର ଟଂକାର ଜିନିଷସହ ପତି ଓ ଶ୍ୱଶୁର ସହିତ ଶ୍ୱଶୁରାଳୟକୁ ଯିବା ବାଟରେ ନାଆବୁଡ଼ି ଦୁର୍ଯୋଗ ହେତୁ ପତିଠାରୁ ବିଚ୍ଛିନ୍ନ ହୋଇ କଟକର ଲଙ୍ଗଳକଣ୍ଡା ଦଳେଇ ଘରେ ଆଶ୍ରୟ ପାଇଥିଲେ । ଦଳେଇ ପୁଅର ଅତ୍ୟାଚାରରେ ପ୍ରାଣ ବିସର୍ଜନ କରିବାକୁ ଆସି ଅଧରାତିରେ ମହାନଦୀ କୂଳରେ ପଡ଼ି ବିଦ୍ୟାଧର ଦ୍ୱାରା ଉଦ୍ଧାର ପାଇଥିଲେ । ପରେ ପିତ୍ରାଳୟରେ ପତିଙ୍କ ସହ ସୁଖରେ ଦାମ୍ପତ୍ୟ ଜୀବନ ଅତିବାହିତ କରିଥିଲେ ।

**ପଣ୍ଡିତ ମୃତ୍ୟୁଞ୍ଜୟ କବିଭୂଷଣ** - (ମାମୁ) ପେସ୍କାରଙ୍କ ଗୃହରେ ନରୁ ଅବସ୍ଥାନ କରୁଥିବାବେଳେ ଇଏ ଥିଲେ ତାର ଶିକ୍ଷକ । ମେଘଦୂତ ପଢ଼ାଉଥିବା ଅବସରରେ ନାଜର ଅପ୍ରତ୍ୟାଶିତ ପ୍ରବେଶ କରିଥିଲେ ଓ ନାନା ଉତ୍ସାହ ବାକ୍ୟ ଶୁଣାଇଥିଲେ ।

**ପଟ୍ଟନାୟକ ବୋହୂ** - (ମାମୁ) ଗ୍ରାମ୍ୟସ୍ତ୍ରୀ । ପଞ୍ଚଦଶ ପରିଚ୍ଛେଦରେ ଆସିଚି । ବିଶାଖାର ଚବିଶ ଘଣ୍ଟିଆ ପାନଖିଆ ସଂପର୍କରେ ମନ୍ତବ୍ୟ ଦେଇଚି ।

**ପରମ ପରିଜା** - (କାଳିକା ପ୍ରସାଦ ଗୋରାପ) ରାଜରାଜେଶ୍ୱରୀ ପ୍ରସାଦ ଗୋରାପର ମାଲିକ । ରଘୁନାଥ ଦେଙ୍କ ଘରେ ଅନୁଷ୍ଠିତ ଜଳଦସ୍ୟୁବିରୋଧୀ ବୈଠକରେ ଉପସ୍ଥିତ ଥିଲେ । ବିଲାତ ଲୋକଙ୍କ ଜାତି-ଧର୍ମ ଇତ୍ୟାଦି ସଂପର୍କରେ ବ୍ୟାଖ୍ୟା କରିଥିଲେ । କେବଳ ଇଂରେଜଙ୍କ ସହ କାରବାର ଓ ବାକି ପିଂରିଙ୍ଗୀଙ୍କ ସହ ବୈକଟ କରିବାକୁ ସେ ଚାହିଁଛନ୍ତି ।

**ପାରୀ** - (ମାମୁ) ଗ୍ରାମ୍ୟ ସ୍ତ୍ରୀ । ପଞ୍ଚଦଶ ପରିଚ୍ଛେଦରେ ଆସିଚି । ବିଶାଖା କାହିଁକି ଡାହାଣ ହାତଟି ଘୋଡ଼େଇ ରଖିଥାଏ ବୋଲି ଯେ ଗେଲ୍ଲେଇକୁ ପଚାରିଚି ।

**ପାର୍ଥସାରଥି ବାଘସିଂହ** - (ମାମୁ) ବୀରବର ମଲ୍ଲଂକ ଜ୍ୟେଷ୍ଠ ପୁତ୍ର । ପ୍ରତାପ ଉଦିତ ମଲ୍ଲଂକ ପିତା । ସେ ପରଲୋକ ଗମନ କରିବାରୁ ନାବାଳକ ପୁତ୍ର ପ୍ରତାପ ଉଦିତ ମଲ୍ଲ କଟକରେ ସରକାରଂକ ତତ୍ତ୍ୱାବଧାନରେ ବିଦ୍ୟାଧ୍ୟୟନ କରିବାକୁ ଲାଗିଲେ ଓ ନରିପୁର କିଲ୍ଲା କୋର୍ଟ ଅଫ ଉଆର୍ଡ଼ ଅଧିନ ହୋଇଥିଲା ।

**ପାଟଯୋଷୀ** - (ପ୍ରାୟଶ୍ଚିତ୍ତ) ବୈଷ୍ଣବଚରଣଙ୍କ ଜ୍ୟୋତିଷ । ଗୋବିନ୍ଦର ଛୁଟି ପରବର୍ତ୍ତୀ କଟକ ଯାତ୍ରାବେଳେ ମୁହୂର୍ତ୍ତ ଅଶୁଭ ବୋଲି ସୂଚେଇଥିଲେ ।

**ପାଣ୍ଡିଆ** - (ଛମାଣ ଆଠଗୁଣ୍ଠ) ମଂଗରାଜଙ୍କ ଅନ୍ୟତମ ହଳିଆ । ସାଆନ୍ତେ ଚଳି ଯୋଗାଡ଼ ଅଭିପ୍ରାୟରେ ବୁଲି ବାହାରିଲା ବେଳେ ସେ ତାଂକ ପଛେ ପଛେ ଚାଲିଥିଲା କାନ୍ଧରେ ଯୋଡି ଲୁଆଳି ପକାଇ ।

**ପାଣ୍ଡେଇ ପାତ୍ର** - (ବିରେଇ ବିଶାଳ) ନାୟିକା କମଳୀର ବାପା । କମଳୀ' ବିରେଇ ବିଶାଳର ସ୍ତ୍ରୀ । କମଳୀର ବିରେଇ ସହ ବିବାହ ପାଇଁ ହଜାରେ ଟଂକା କନ୍ୟାସୁନା ଇଏ ମାଗିଛି । ପ୍ରଥମ ଦୁଇଝିଅଙ୍କୁ ଷାଠିଏ ଷାଠିଏ ବର୍ଷର ଦୋବେଇ ବରକୁ ଦେଇ ଦୁଇ ହଜାର ଟଂକା ସେ ଆଣିଥିଲେ । ମାତ୍ର କନ୍ୟାମାନେ ଅଚିରେ ବିଧବା ହେଲେ । ଇଏ କନ୍ୟା ବିକ୍ରିକରି ଧନବୃଦ୍ଧି କରିବାରେ ଆଗ୍ରହୀ । ଅର୍ଥଗୃଧ୍ର କମଳୀ ବୁଢ଼ାବରରେ ବାହା ହେଲେ ପୋଖରୀକୁ ଡ଼େଇଁ ପଡ଼ିବାର ଧମକ ଶୁଣି ଇଏ ଖୁବ୍ ରାଗିଛନ୍ତି- 'ମୁଁ ତୋତେ ଚଉଦ ବରଷ କାଳ ଖୁଆଇ ପିଆଇ ବଢ଼ାଇଲି, ଭାତ ଲୁଗା ଦାମ ପାଞ୍ଚଶ ଟଂକା ଗଣି ଥୋ - ତା ବାଦେ ମରିବୁତ ମର ଯା, ମୋର ମନା ନାହିଁ ।' ଅତି ହିସାବୀ । କାଳେ ଝିଅ ମରିଯିବ ଓ କୁଳ ବୁଡ଼ିଯିବ, ଏଇ ଭୟରେ ଇଏ ସାତଶହ ଟଂକାରେ ବିରେଇକୁ ଝିଅ ଦେବାକୁ ନିଷ୍ପତ୍ତି କରି ପ୍ରଥମେ ଦୁଇଶହ ଓ ବାକି ବେଦୀ ମୁଣ୍ଡରେ ପାଞ୍ଚଶ ଟଂକା ବିରେଇଠୁ ନେବାକୁ ରାଜି ହୋଇଛି । ବେଦୀରେ ଛ'ଟଂକା ନିଅଣ୍ଟ ପଡ଼ିବାରୁ ଇଏ ବିରେଇର ପଚାଶ ପାଣ୍ଡି ବିକି ଟଂକାତକ ଭରଣା କରାଇ ନେଇଛି । ଖାଇବାକୁ ଦେବା ଭୟରେ କାଉ କା' କରିବା ପୂର୍ବରୁ ବରକୁ ବିଦା କରିଛି । ବିଦାବେଳେ ଝିଅ କମଳୀର ବିରେଇ ସାତଶ ଓ ବଡ଼ ଭଉଣୀଙ୍କର ତିନିଶ ଟଂକାନେଇ ଚାଲି ଯାଇଛି । ଟଂକା ମାଗିଯାଇ ପାତ୍ର ଆପଣା ବ୍ୟବହାରରେ ଗାଁ ଲୋକଙ୍କୁ ରୁଷ୍ଟକରି ଗାଁ ବାଲାଂକଠୁ ବିଧାଚାପୁଡ଼ା ଖାଇଛି । 'ଚଣ୍ଡାଳ ମାଉଁସ ବିକାଳୀ' ନାଁରେ ସମ୍ବୋଧିତ ହୋଇ ଉପହସିତ ହୋଇଛି ।

ରାଘବ ପାତ୍ର ଭାବେମଧ ଗଳ୍ପରେ ଏହାର ନାମୋଲ୍ଲେଖ ରହିଚି ।

**ପିଅନ** - (ଡାକମୁନ୍‌ସୀ) ମୁଖ୍ୟଚରିତ୍ର ଗୋପାଳ ବାବୁଂକର ପିଅନ । ସହୃଦୟ । ଇଂରାଜୀ ନ ପଢ଼ିଥିଲେ ମଧ ଗୋପାଳ ବାବୁଂକର ଅମାନବିକ ଆଚରଣ ତାକୁ ଆଘାତ ଦେଇଛି ।

**ପିଦୁ ଖାଁ** - (ଛମାଣ ଆଠଗୁଣ୍ଠ) ଗୋପୀ ସାହୁ ଦୋକାନଘରେ ଚଂପାର ଖୁଣି ତଦାରଖରେ ଆସିଥିବା ବରକନ୍ଦାଜ ।

**ପୀତାମ୍ବର ଛୋଟରାୟ** - (ମାମୁ) ନବଘନଙ୍କ ଚତୁର୍ଥ ପୁତ୍ର ସନାତନ ଅରିଦମନଙ୍କ ପୁତ୍ର । ପ୍ରତାପ ଉଦିତମଲ୍ଲଙ୍କ ସମବୟସ୍କ । ଏକତ୍ର ଦିହେଁ କଟକରେ ସ୍କୁଲପାଠ ପଢୁଥିଲେ । ଏଣ୍ଟ୍ରାନ୍‌ସ ପାସକଲା ପରେ ସେ ପେସ୍କାରୀ କର୍ମକଲେ, ଉଦ୍ଦେଶ୍ୟ - ହାକିମ-ହୁକୁମାଙ୍କ ପାଖରେ ଥିଲେ ଆପଣାକିଲ୍ଲା ଓ -ଲୋକଙ୍କୁ ସାହାଯ୍ୟ କରିବେ । ଦେଶର ଅଭ୍ୟନ୍ତରୀଣ ଅବସ୍ଥାକୁ ବୁଝିପାରିବେ ଲୋକଙ୍କ ସହ ମିଶି । ତାଂକର ଏକ ନିଜସ୍ୱ ପୁସ୍ତକାଳୟ ମଧ ଥିଲା । ପ୍ରତାପଉଦିତ ମଲ୍ଲଙ୍କ ମୃତ୍ୟୁପରେ ନାଜର ନଟବରଂକ ଚକ୍ରାନ୍ତ ବେଳେ ପ୍ରତାପ-ପରିବାରର ସାହାପକ୍ଷ ଥିଲେ ଏଇ ପେସ୍କାର । ଚାନ୍ଦମଣିର ଅସୁସ୍ଥତା କଥା ଜାଣି ଇଂରେଜ ଡ଼ାକ୍ତର ନେଇ ଚିକିତ୍ସା

କରାଇ ନବଜୀବନ ଦାନ କରିଥିଲେ । ନଟବର ଘରେ ଅପମାନିତ ହୋଇ ନରୁ ମଧ ଏହାଂକ ଘରେ ଆଶ୍ରୟ ଓ ଶାନ୍ତି ପାଇଥିଲେ । ଯେ ଥିଲେ କଟକରେ ଉତ୍ତରରାୟ ପରିବାରର ଏକମାତ୍ର ଶୁଭେଚ୍ଛୁ । ନାଜରଙ୍କୁ ହାଜତରେ ରଖାଯିବା ଓ ତାଂକ ଶାଶୁ ଓ ସ୍ତ୍ରୀଙ୍କ ଚରମ ଦୁର୍ଦ୍ଦିନବେଳେ ଏଇ ପେସ୍କାରହିଁ ସେମାନଙ୍କ ତତ୍ତ୍ୱନେବାକୁ ଦୁଇଜଣ ଦାସୀଂକୁ ପଠାଇ ଆପଣା ଉଦାରତା ଓ ମହାନୁଭବତାର ପରିଚୟ ଦେଇଥିଲେ ।

**ପୀତେଇ ପାତ୍ର** - (ବିରେଇ ବିଶାଳ) ବିରେଇର ମାମୁଁ । ଅକ୍ଷିତ ଛେଉଣ୍ଡ ପାଞ୍ଚବର୍ଷର ବିରେଇକୁ ପାଳିବାର ଦାୟିତ୍ୱ ପଞ୍ଚାୟତ ଏହାଙ୍କୁ ଦେଇଛି । ଘର ମାକଲପୁର; ମୁକୁନ୍ଦପୁରଠୁ ଅଧକୋଶ ଛଡ଼ା । ବିରେଇର ସମ୍ପତ୍ତିକୁ ନଜରରେ ରଖିବା ନାଁରେ ସବୁ ନିଜଘରକୁ ନେଇଗଲେ । ବୋଇଲା 'ଜୋରୁ, ଗୋରୁ, ଧନ- ଏ ତିନି ନିଜର ଗୁଜରାଣ' । ତେଣୁ ଚାଲାକି କରି ରାତି ଅଧରେ ବଳଦରେ ଲଦି ବିରେଇର ମାଲ ଆପଣା ଘରକୁ ନେଇ ଯାଆନ୍ତି । ଗାଁ ଦିଗବାର କହିବାର ଶୁଣାଗଲା-ପାତ୍ରେ ଦଶଗୋଟା ବଳଦରେ କୋଡ଼ିଏ ଦିନ ଯାଏଁ ଧାନଚାଉଳ, ଲୁଗାପଟା, କଂସାବାସନ,ଚିଜବସ୍ତୁ ସବୁ ବୋହିଥିଲେ । ବିଶାଳର ପ୍ରାୟ ପଚାଶ ଭରଣ ଭଳି ଧାନ ଘରକୁ ନେଲେ । ପଚାଶ ଭରଣ କରଜ ଲାଗିଥିବା ଧାନର ମୂଳ କଳନ୍ତର ଦେଲେ । ଇଏ ଲୋଭୀ, ଭଣଜାର ସର୍ବସ୍ୱ ନିଜଘରେ ପୂରାଇଛି । ଆଠବର୍ଷର ଭଣଜା ବିରେଇର ପାଠ ବନ୍ଦକରି ଗାଈଜଗିବା କାମ ଦେଇଛି । ଗାଁ ଲୋକଙ୍କ କଥାର ଉତ୍ତରରେ କହିଚି, 'ଛେଉଣ୍ଡର ଲାଞ୍ଜ ଦିଖଣ୍ଡ ପରହାତରେ ପଡ଼ି ବୁଡ଼ିବାକୁ ବସିଥିଲା । ତା ନିଜ ମାଲ ନିଜେ ଦେଖୁ ।' ସ୍ତ୍ରୀକୁ ଭୟ ହେତୁ ପୁଅ ବିପଥଗାମୀ ହେଲେ ବି ଆକଟ କରି ପାରେନି । ନିଜପୁଅକୁ ଦେଢ଼ ହଜାର ଟଂକା ଖର୍ଚ୍ଚକରି ବାହା କରାଏ, ଭଣଜାକୁ ନୁହେଁ । ନିଜ ସ୍ୱାର୍ଥପାଇଁ ଭଣଜାକୁ ବାହା କରାଇ ଦବାର ମିଥ୍ୟା ଆଶ୍ୱାସନା ଦିଏ ।

ବିରେଇ ଯିବାପରେ ପୁଅ ଚଣ୍ଡୀ ଅଢ଼େଇବର୍ଷ ମଧରେ ଘର ଉଜାଡ଼ କରିଦିଏ । ପୁଅଠୁ ବାପାମାଆ ମାଡ଼ ଖାଆନ୍ତି । ବିରେଇ ଦ୍ୱାରା ଆଶ୍ରା ପାଇ ଶେଷରେ ରହନ୍ତି ।

**ପୁରୁଷୋତ୍ତମ ବିଦ୍ୟାରାୟ** - (ମାମୁ) ପଣ୍ଡିତ ସଭାରେ ଯୋଗ ଦେଇଥିବା ବାଙ୍ଗୀ ପଣ୍ଡିତ ।

**ପୁରୁଷୋତ୍ତମ ରଥ** - (ପୁନର୍ମୂଷିକୋଭବ) ପେସ୍କାରଙ୍କ ଗାଁ ଲୋକ । ପୂର୍ବରୁ ପେସ୍କାରଙ୍କ ଘରେ ପହଞ୍ଚିଲେ କିଶାରାମ ପାଣିଡାଳେ ଗୋଡ଼ ଧୋଇବାକୁ ଦେଉଥିଲା । ଏକଦା ତା'ଠାରୁ ବେଖାତିର ଭାବ ଦେଖି ଓ ପରେ ଏହାର କାରଣ ଜାଣି ରଥେ କିଶାପତି ଉଦ୍ଦେଶ୍ୟ କରି କହିଥିଲେ 'ପୂନର୍ମୂଷିକୋଭବ' ।

**ପୁରୁଷୋତ୍ତମ ରଥ ବିଦ୍ୟାବାଗୀଶ** - (ମାମୁ) ପଣ୍ଡିତ ସଭାରେ ଉତ୍ତରରାୟ ପରିବାରଙ୍କୁ ଆଶୀର୍ବାଦ କରିବାକୁ ସଭାକୁ ଏ ପଣ୍ଡିତ ଅନୁରୋଧ କରିଥିଲେ ।

**ପୁଲିସ ସାହେବ** - (ରାଣ୍ଡୀପୁଅ ଅନନ୍ତା) ମକ୍ରାମପୁର ଫାଣ୍ଡି ତଦାରକ କରିବାକୁ ଯେ ଯାଇଥିଲେ । ଡେରା ପାଖରେ ପାଟ । ସେଠି ପକ୍ଷୀଶିକାର କରିବା ଅବସରରେ ସୁବଳ ମହାକୁଡ଼ର ନିର୍ଭୀକତା ଓ ସାହସର ପରିଚୟ ପାଇ ମୁଗ୍ଧ ହୋଇଥିଲେ ଓ ତାଙ୍କୁ କନେଷ୍ଟବଲ ଚାକିରିରେ

ରଖିଥିଲେ । ଯେ ଥିଲେ ଶିକାର ପ୍ରିୟ । ଅନ୍ୟ ଏକ ଶିକାରବେଳେ ଏହାର ସାହସରେ ମୁଗ୍ଧ ହୋଇ ଜମାଦାର କରିଦେଇଥିଲେ । ସୁବକର ସାହସ, ପରାକ୍ରମ ଦର୍ଶାଇବା ଅବସରରେ ଏ ଚରିତ୍ରର ଅବତାରଣା ।

**ପେସ୍କାର** - (ପୁନର୍ମୂଷିକୋଭବ) କିଣା ବାରିକ ଏହାଂକ ଘରେ କାମକରୁଥିଲା । ଏହାଙ୍କ କୃପାବଳରେ ସେ କିଣାରାମ ସିଂ, କନେଷ୍ଟବଳ ଭାବେ ପରିଚିତ ଓ ସ୍ୱୀକୃତ ହେଲା । ରମା ବାରିକ ନିର୍ଦ୍ଦୋଷରେ ଖଲାସ ହେବାପରେ କିଣାରାମକୁ ପୁଲିସ କର୍ମରୁ ବରଖାସ୍ତ କରାଯିବାବେଳେ ଏହାଙ୍କ ଅନୁରୋଧରେ କର୍ମରେ ସେ ବହାଲ ରହିଥିଲା । କିଣାରାମ ଦୁର୍ନୀତି ଅଭିଯୋଗରେ ଧରାପଡ଼ିବା ପରେ କ୍ଷୁର୍ଣ୍ଣହୋଇ ସେ ତାକୁ ଘରୁବାହାର କରିଦେଇଥିଲେ ।

**ପୋଷ୍ଟମାଷ୍ଟର ବାବୁ** - (ଡାକମୁନ୍‌ସୀ) କଟକର ସଦର ପୋଷ୍ଟ ଅଫିସରେ ପୋଷ୍ଟମାଷ୍ଟର । ହରିସିଂହଙ୍କର କାମରେ ତୁଷ୍ଟ ହୋଇ ତାଂକର ଚାକିରିକାଳ ବୃଦ୍ଧି କରାଇ ଦେଇଛନ୍ତି । ହରିସିଂ ପୁଅକୁ ମଫସଲର ସବ୍‌ପୋଷ୍ଟମାଷ୍ଟର ପଦରେ ନିଯୁକ୍ତ କରାଇଛନ୍ତି ।

**ପ୍ରତାପ ଉଦିତମଲ୍ଲ** - (ମାମୁ) ପିତା-ପାର୍ଥସାରଥି ବାଘସିଂହ, ଜେଜେବାପା-ନବଘନ ଉତ୍ତରରାୟ । କଟକରେ ଦାଶରଥି ଦାସଙ୍କ ପୁଅ ବନ ଓ ନରୁ ସହ ପଢୁଥିଲେ । ଦାଶରଥିଙ୍କ କନ୍ୟା ଚାନ୍ଦମଣି ସହ ଏହାଙ୍କ ମଙ୍ଗଳକୃତ୍ୟ ହୋଇଥିଲା । ଦାଂପତ୍ୟ ଜୀବନ ଥିଲା ସୁନ୍ଦର ଓ ପବିତ୍ର । ଶିକ୍ଷିତ, ଦୟାଳୁ ଓ ଉଦାରଚିତ୍ତ ହୋଇଥିବାରୁ ଆପଣା ପ୍ରଜାଂକ ଅବସ୍ଥାର ଉନ୍ନତିପାଇଁ ବିବିଧ ପ୍ରଚେଷ୍ଟା କରି ଲୋକପ୍ରିୟ ହୋଇଥିଲେ । ଉତ୍ତମ ଜମିଦାରଭାବେ ତାଂକର ଥିଲା ସୁଖ୍ୟାତି । ପ୍ରଜାଂକୁ କମ୍ ସୁଧରେ ଋଣ ଦେଇ ଚାଷବାସ ପାଇଁ ଉତ୍ସାହିତ କରୁଥିଲେ । ତାଂକ ପ୍ରଶାସନରେ କର୍ମଚାରୀମାନଙ୍କର ମଧ ବିବିଧ ଉନ୍ନତି କରିଥିଲେ । ଏକତ୍ରିଂଶ ବର୍ଷ ବୟସରେ ଏହି ପ୍ରଜାବତ୍ସଳ, ଉଦାର ଓ ପ୍ରଜାହିତୈଷୀ ଜମିଦାର ମୃତ୍ୟୁବରଣ କରିଥିଲେ ।

**ପ୍ରଭୁଦୟାଲ ଭଗତ** - (ମାମୁ) ଜଣେ ବିହାରୀ ଶୁଣ୍ଢୀ ମହାଜନର ପୁଅ । ଇଂରେଜୀ ପଢ଼ାଇ ପୁଅକୁ ହାକିମ କରିବାର ସ୍ୱପ୍ନ ଏହାର ବାପା ଦେଖିଥିଲେ ଓ ତଦନୁଯାୟୀ ପ୍ରଭୁଦୟାଲକୁ ଗଢୁଥିଲେ । ଆଠ-ଦଶବର୍ଷକାଳ ପରିଶ୍ରମକରି ସ୍କୁଲରେ ଥାର୍ଡ କ୍ଲାସରୁ ସେକେଣ୍ଡ କ୍ଲାସକୁ ଯାଇଥିଲା । ବାପାଙ୍କ ମୃତ୍ୟୁପରେ ବିଷୟ ସଂପତ୍ତିର ଦୁରୂପଯୋଗ କଲା ବଂଧୁଚର୍ଚ୍ଚା, ସଂଗୀତ ସାଧନ, ଭୋଜିଭାତରେ । ବଜାରର ଜଣେ ନୀଚ ସ୍ତ୍ରୀ ଲୋକ ହାତରୁ ଖାଉଥିଲା ବୋଲି ଜାତିରୁ ବାସନ୍ଦ କରାଯାଇଥିଲା । ତାପରେ ଋଣଗ୍ରସ୍ତ ହେଲା ଓ ପିଆଦାମାନଙ୍କର ଉପୁରିବେଶୀ ଜାଣି ପିଆଦାଟିଏ ହେବାକୁ ସ୍ଥିରକଲା । ବାପ ଚାହିଁଥିଲା ହାକିମଟିଏ ହେଉ, ପୁଅ ପିଆଦା ହେବାକୁ ମନସ୍ଥ କଲା । ନାଜରଙ୍କ ବସାରେ ରାଘବ ମହାନ୍ତି ସହ ଏହାର ଭେଟ ଓ ବଂଧୁପଣରେ ତାକୁ ସଙ୍ଖୋଳା । ଏହାରି ପରାମର୍ଶରେ ରଘୋ, ନାଜରାଣୀ (ତା'ଅପା)ଙ୍କ ତକିଆତଳଠୁ ସିନ୍ଦୁକ ପର୍ଯ୍ୟନ୍ତ ସବୁଠୁ ଟଂକାଚୋରୀ ଆରମ୍ଭକଲା । ଏହି ଶଠ ରଘୋ' ମହାନ୍ତିକୁ ଅସ୍ତ୍ର କରି ତା ମାଧମରେ

ଅର୍ଥ ଆନୟନ କରାଉଥିଲା । ନାଜରଙ୍କ ସରକାରୀ ଟଂକା ଚୋରୀରେ ଏହାର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଶେଷପର୍ଯ୍ୟନ୍ତ ଯେ ଧରାପଡ଼ିନଥିଲା । ଏ ଚରିତ୍ରଟି ମାଧମରେ ରାଘୋର ସାରଲ୍ୟହିଁ ଅଧିକତର ପ୍ରସ୍ଫୁଟିତ ।

**ଫତୁଆ** - (ଛ'ମାଣ ଆଠଗୁଣ୍ଠ) ସେଖ ଦିଲ୍‌ଦାର ମିଆଁଙ୍କ ଅନ୍ୟତମ ଖିଦ୍‌ମଦ୍‌ଗାର । ମିଆଁଙ୍କ କଚେରୀ ଘରେ ସମସ୍ତେ ବିମର୍ଷ ଅବସ୍ଥାରେ ବସିଥିବା ବେଳେ ସେ ଅଫିମ ପ୍ରସ୍ତୁତ କରୁଥିବା ବର୍ଣ୍ଣିତ ।

**ବକାଉଲ୍ ଖାଁ** - (ଛମାଣ ଆଠଗୁଣ୍ଠ) ସେଖ୍ ଦିଲ୍‌ଦାର ମିଆଁଙ୍କ କଚେରୀ ଘରେ ପ୍ରଥମେ ଏହାଂକ ଉଲ୍ଲେଖ ଦେଖିବାକୁ ମିଳେ । ଏ ଜଣେ ଓସ୍ତାଦ୍‌ଜୀ । ''ଖାଁ ଦୁଇ ଗୋଡ଼ କୁଣ୍ଢାଇ ଦାଢଟିକୁ ଆଣ୍ଠୁ ଉପରେ ଲଦିଦେଇ'' ବସିଥିବାର ଚିତ୍ର ମିଳେ । ଅଥଚ ମଂଗରାଜ ପଲାଓ ଚାଉଳ ଆଦି ବରାବର ହାଜର କରିବା କଥା କହିବାରୁ ଉକ୍ତ ସଭାଜନଙ୍କ ଆନନ୍ଦରୋଳ ସହ ଏହାଂକ ଆନନ୍ଦ ପ୍ରକାଶିତ ହୋଇଥିଲା ଏହିରୂପେ 'ତାନପୁରା କାନ ବାଁ ହାତରେ ମୋଡ଼ି ସ୍ୱର ଦେଇ ବସିଲେ'' ମଂଗରାଜଂକ ଛେଳି ପଠାଇବା କଥା ଶୁଣି ଆନନ୍ଦରେ ଇଏ 'ପୁରିଆ ରାଗିଣୀ'ର ଆଳାପ କରିବାକୁ ଲାଗିଥିଲେ । ଇଏ ମଧ ବାଇଜୀଙ୍କୁ ନଜରାନା ଶହେ ଟଂକା ଦେବା କଥା ମନେ ପକାଇ ଦେଇ ଆପଣା ହୁସିଆରୀର ପରିଚୟ ଦେଇଥିଲେ ।

**ବନମାଳୀ ଓଝା** - (ପୁନର୍ମୂଷିକୋଭବ) ମକ୍ରାମପୁର ଗାଁର ଅବଧାନ । କନେଷ୍ଟବଳ କିଣାରାମକୁ ଛାନ୍ଦ ଶୁଣାନ୍ତି । ଯେ କିଣାରାମକୁ ଗାଁ ବାଲାଙ୍କୁ ଲୁଣମରା ଅଭିଯୋଗରେ ନଧରିଲେ ସେମାନେ ତାର ସମସ୍ତ ବସାଖର୍ଚ୍ଚ ବହନ କରିବା ତଥା ଗୋଟିଏ ଗୋଟିଏ ଲୁଣମରା ଆସାମୀ ଯୋଗାଡ଼ କରିଦେବା ସର୍ତ୍ତ ରଖିଥିଲେ ।

**ବନମାଳୀ ବାଚସ୍ପତି** - (ଲଛମା) ରାଇବଣିଆର ରାଜଗୁରୁ । ମରହଟ୍ଟା ଦୂତ ଶିଉଶଙ୍କର ମାଲବୀରଙ୍କ ସହ ମରହଟ୍ଟାମାନଙ୍କ ସହ ରାଇବଣିଆ ଦୁର୍ଗେଶ୍ୱରଙ୍କ ସୌଖ୍ୟଭାବ ସଂପର୍କରେ ଆଲୋଚନା କରିଥିଲେ । ରାଇବଣିଆ ଯୁଦ୍ଧପରେ ମାନଧାତାଙ୍କ ସହ ସେ ମଧ ଧୃତ ହୋଇ ବିଚାରପାଇଁ ନିଆଯାଇଥିଲେ । ହିନ୍ଦୁ ଦରବାରରେ ବ୍ରାହ୍ମଣ ଅବଧ ହୋଇଥିବାରୁ ମୁକ୍ତିପାଇ ପଳାୟନ କରିଥିଲେ ।

**ବନ ଶେଠି** - (ରେବତୀ) ଜନୈକ ଧୋବା । ପଚାଶ ଷାଠିଏ ମଡ଼ା ପୋଡ଼ାର ଅଭିଜ୍ଞତା ତାର ଥିଲା । ଶ୍ୟାମବନ୍ଧୁଙ୍କ ବିୟୋଗରେ ସେ ଶ୍ମଶାନ କର୍ମ ତୁଲାଇବାକୁ ଆସିଥିଲା ।

**ବନା ଜେନା** - (ଛମାଣ ଆଠଗୁଣ୍ଠ) ପିତା-ଦନାଜେନା, ଜାତି-ପାଣ, ବୟସ-ଅଠର, ପେଷା-ହଳିଆଗିରି । ଯେ ମଂଗରାଜଂକ ବିରୁଦ୍ଧରେ ପ୍ରସ୍ତୁତ ମିଥ୍ୟା ସାକ୍ଷ୍ୟ ଦେଇଥିଲେ । ଦ୍ୱାଦଶୀଦିନ ଅଧରାତିରେ ସେ ସାଉଘର ଗୋରୁଖୋଜି ଆସିଥିବା ବେଳେ ରାମଚନ୍ଦ୍ର ମଙ୍ଗରାଜ ସାରିଆକୁ ବାଉଁଶବାଡ଼ିରେ ବାଡ଼ଉଥିବା ଦେଖିଚି ବୋଲି କହିଥିଲା ।

**ବନ୍ଦୀଦୀନ ମିଶର** - (ପ୍ରାୟଶ୍ଚିତ୍ତ) ସମସରପୁର ଉଆସରେ ସଦ୍ୟ କଚେରୀକୁ ମୁତୟନ ହୋଇଥିବା କନେଷ୍ଟବଳ । ଗୋବିନ୍ଦଚନ୍ଦ୍ରଙ୍କୁ ଡକାୟତ ଭାବି ପାଇକମାନେ ଧରି ଏହାଙ୍କ ଜିମାଦେଇଥିଲେ ଓ ସଇତା, ଗୋବିନ୍ଦଙ୍କୁ ବନ୍ଧନମୁକ୍ତ କଲାବେଳେ ଯେ ବାରଣ କରିଥିଲେ ।

**ବଳରାମ ଦାସ** - (ସୁନାବୋହୂ) ନାୟିକା ନିମା'ର ଭାଇ । ଦୁମଦୁମ ପୁର ଗାଁରେ ଘର । ଜୀବିକା ଅବଧାନୀ କର୍ମ । ଏହାଂକର କେବଳ ନାମୋଲ୍ଲେଖ ରହିଛି ।

**ବଳରାମ ନାୟକ** - (ବଗଲା ବଗୁଲୀ) ଭୁଷଣ୍ଡପୁର ଗାଁର ଜମିଦାର । ବିଦିଆପାତ୍ର ଚଉକିଆର ମହତପଣିଆ ହେତୁ, ବିଦିଆ ପୁଅ ସପନା ବିବାହ ଗ୍ରାମବାସୀଙ୍କଦ୍ୱାରା ତୁଲାଇ ନେବାର ପ୍ରସ୍ତାବ ଗ୍ରାମବାସୀଙ୍କୁ ଦେଇଛନ୍ତି ଓ ଶେଷରେ ଆଡ଼ମ୍ବରରେ ସପନା ବିବାହ କରାଇବାରେ ସାହାଯ୍ୟ କରିଛନ୍ତି ।

**ବଳରାମ ବଳ** - (ସଭ୍ୟଜମିଦାର) କଲିକତା ବଡ଼ବଜାରର ଗଦିଅନା ମହାଜନ । ଓଡ଼ିଶାର ସବୁବେପାରୀଙ୍କର ଚିହ୍ନରା ଭଲ ଦଣ୍ଡିଦାର ତେଣୁ ନାମଡାକ । ଘର ଯାଜପୁର ଅଞ୍ଚଳ, ଗ୍ରାମ ନାଁ ଜଣାନାହିଁ । ଗଳ୍ପର ନାୟକ ରାଜୀବର ପିତା ଗୋପାଳକୁ ଇଯେ ପାଳି, ମଣିଷକରି ବ୍ୟବସାୟ ଶିଖାଇଥିଲେ । ଗୋପାଳ ଅନ୍ତେ ତାର ପୁତ୍ର ରାଜୀବକୁ ଯତ୍ନରେ ବ୍ୟବସାୟ ଶିଖାଇବାକୁ ଚେଷ୍ଟା କରିଥିଲେ ।

**ବଳରାମ ମଲ୍ଲ** - (ଛମାଣ ଆଠଗୁଣ୍ଠ) ବାଘସିଂହ ବଂଶର ସାନପୁଅ । ରତନପୁର ମୌଜାକୁ ମଂଗରାଜଂକ ଗୋରୁ ଉଜାଡ଼ କରୁଥିବାରୁ ଆଚ୍ଛାକରି ମଂଗରାଜଂକୁ ଗାଳି ଦେଇଥିଲେ । ମଂଗରାଜ ନୀରବ ରହିଥିଲେ । ଏ ଘଟଣାର ସୂତ୍ର ପୂର୍ବରୁ ଚମ୍ପା ଓ ମଂଗରାଜଙ୍କ ଗୋପନ ଆଲୋଚନା ବେଳେ କ୍ଷୀଣ ଅଥଚ ଗୁରୁତ୍ୱପୂର୍ଣ୍ଣ ଭାବେ ଆସିଚି । ବଳରାମଂକ ଗାଳି ହେତୁ ଆପଣା ନିରୁପାୟତା ଜଣାଇ ମଙ୍ଗରାଜ, ଚଂପାକୁ ଦାଉ ସାଧିବାର ଦାୟିତ୍ୱ ଦେଇଥିଲେ ।

**ବଳେଇ ବାହିନୀ ପତି** - (ଅଧର୍ମବିତ୍ତ) ଖାଲପାଳ ଗାଁର ପୁରୁଣା ବୈଦ୍ୟ । ପଦ୍ମାବତୀର ଚିକିତ୍ସା କରି ତାର ଚେତା ଫେରାଇ ଆଣିଥିଲେ ।

**ବାଆନ ଭୂୟାଁ** - (ବାଲେଶ୍ୱରୀ ରାହାଜାନୀ) ବସ୍ତାଥାନାଠାରୁ ଚାରିକୋଶ ଦୂର ଚାରିଗାଁରେ ଘର । ସଙ୍ଗତିସଂପନ୍ନ ଗୃହସ୍ଥ । ଡକାୟତଦ୍ୱାରା ନିଷ୍ଠୁରଭାବେ ଅତ୍ୟାଚାରିତ । ଏହାଙ୍କ ବୀରତ୍ୱ ଓ ଦୁଃସାହସ ଫଳରେ କେତେକ ଡକାୟତ ଆହତ ଓ ଜଣେ ମୃତ୍ୟୁବରଣ କଲେ । ଡକାୟତମାନେ ଏହାଙ୍କୁ ବେକମାଡ଼ି ହତ୍ୟା କରିଥିଲେ । ଡକାୟତମାନଂକ ନିଷ୍ଠୁରତା ଓ ନିର୍ଦ୍ଦୟତାର ସୂଚନା ଦେଇ ଏ ଚରିତ୍ରର ଅବତାରଣା ଘଟିଚି ।

**ବାଇଧର ମହାନ୍ତି** - (ଛମାଣ ଆଠଗୁଣ୍ଠ) ପିତା ଡମ୍ବୁରଧର ମହାନ୍ତି । ଜାତି-କରଣ, ବୟସ-୫୬, ସା କନକ ପୁର, ପ୍ର ଝଙ୍କଡ଼, ଜି କଟକ । ଦୀର୍ଘ କୋଡ଼ିଏ ବର୍ଷଧରି ଫତେପୁର ସରଷଣ୍ଡର ଗୁମାସ୍ତା । ଏହାଙ୍କ ସାକ୍ଷ୍ୟ ପ୍ରଦାନରୁ ମଂଗରାଜଂକ ଶଠତାର ଅନ୍ୟ ଏକ ପ୍ରମାଣ ମିଳେ । ସେ ଦିଲ୍‌ଦାର ମିଆଁଙ୍କୁ ନିଶାଗ୍ରସ୍ତ ଅବସ୍ଥାରେ ତିରିଶ ହଜାର ଟଂକାର ତମସୁକ ଲେଖାଇ ତାଙ୍କର ଦସ୍ତଖତ କରାଇ ନେଲେ ଓ କଟକରେ ମାମଲା କରି ଡିଗ୍ରୀପାଇ ଜମିଦାରୀ ଦଖଲ

କଲେ । ବାଇ ମହାନ୍ତିଂକ ଜମିଦାର ପ୍ରତି ବିଶ୍ୱସ୍ତତାର ନିଦର୍ଶନ ହେଉଚି, ଭଗିଆ ନାମରେ ଆସୁଥିବା ଏତଲାନାମା, ଡିଗ୍ରୀଜାରୀ ପରୁଆନା, ନିଲାମ ଇସ୍ତାହାର ସବୁ ଯେ ନିଜେ । ଭଗିଆକୁ ଦିଆଯିବା ପୂର୍ବରୁ ରଖିନେଉଥିଲେ ।

**ବାଉରି ବାରିକ** - (ମାମୁଁ) ଜନୈକ ଗୁହାରିଆ । ତାର ଖଜଣା ସବୁ ଦେଇଥିଲେ ବି ଆହୁରି ବାକିଅଛି ବୋଲି କୁହାଯାଇ ଥିବାରୁ ସେ ନାଜରଂକୁ ପ୍ରତିକାର ପାଇଁ ଅନୁରୋଧ କରିଥିଲେ । ତା ପାଖରେ ଖଜଣା ଦେଉଥିବାର 'ପାଉତି'ନଥିଲା । ତାକୁ ପାଉତି ଦିଆଯାଉ ନଥିଲା ।

**ବାଞ୍ଛାନିଧି ମହାନ୍ତି** - (ପ୍ରାୟଶ୍ଚିତ) ଦଶଗ୍ରାମୀ ଜମିଦାର ବୈଷ୍ଣବଚରଣଙ୍କ ଉଆସର ଉଆସପାଞ୍ଜିଆ । ଉଆସପାଇଁ ପୁଲିସ ସହାୟତା ମାଗିବାକୁ ଇଂରାଜୀରେ ଚିଠିଲେଖିବାର ଆବଶ୍ୟକତା ଦୃଷ୍ଟିରୁ ଗୋବିନ୍ଦଙ୍କୁ ଗ୍ରାମକୁ ଆସିବାକୁ ଜଣାଇଥିଲେ ।

**ବାନାବର** - (ମାମୁଁ) ଦାଶରଥି ଦାସଂକ ପୁଅ ସୁଶୀଳ, ସଚ୍ଚରିତ୍ର, ଶାନ୍ତ ସ୍ୱଭାବଯୁକ୍ତ । ପାଠରେ ଅମନଯୋଗୀ । ଥାର୍ଡ଼କ୍ଲାସ ପରେ ଚାଷବାସରେ ମନଦେଲେ ଓ ବିଶୁମହାନ୍ତିଂକ ଝିଅ ଲଳିତାକୁ ବିବାହ କଲେ । ପାଠବେଶୀ ପଢ଼ି ନଥିଲେ ବି ମାନବିକତାରେ ସେ ଥିଲେ ଯଥେଷ୍ଟ ଉର୍ଦ୍ଧ୍ୱରେ । ମା ପ୍ରତି ତାଂକ ସେବା ଥିଲା ପ୍ରଶଂସନୀୟ । ଏପରିକି ନଟବରର ଜେଲ ପରେ ନିଜ ଭାଇବୋହୂର ଦୁର୍ଦ୍ଦଶା ହେତୁ ଉପନ୍ୟାସର ଉପସଂହାରରେ ସେ ତାକୁ ଆପଣା ଗାଁକୁ ଘେନିଆସିଚନ୍ତି । ଜଣେ ସରଳ ଓ ସାଧୁ ମଣିଷ ଭାବେ ଏହାଂକ ଚରିତ୍ର ଚିତ୍ରିତ ।

**ବାନ୍ଦର ଦାସ** - (ଧୂଳିଆ ବାବା) ଗଳ୍ପର ନାୟକ । ସବୁବେଳେ ଧୂଳିରେ ଗଡୁଥିବାରୁ ଲୋକେ 'ଧୂଳିଆ ବାବା' ବୋଲି ଡ଼ାକୁଥିଲେ । 'ପାଞ୍ଚହତା ମର୍ଦ, ଗାଲ ଓଠ ଛାତିରେ ଲାଗି ଯାଇଛି, ବେକ ଦିଶେନାହିଁ ' ବାହୁ ଅନ୍ୟଲୋକଙ୍କ ଜଙ୍ଘପରି ମୋଟା, ପେଟଟି ଦଶନୌତିଆ ଘୁମ । ଅଜଣାଲୋକେ ଦେଖି କହିବେ, ମହନ୍ତ ଲଙ୍ଗଳା । ନାହିଁ, ନାହିଁ ଚାଖଣ୍ଡେ ଚୌଡ଼ା ଦେଢ଼ହାତ ଲମ୍ୱ ଖଣ୍ଡେ କନା କୌପୀନ ମାରିଥାନ୍ତି । ଜଙ୍ଘକୁ ଜଙ୍ଘ ଲାଗିଯାଇଛି, ପେଟଟି ଝୁଲିପଡ଼ିଛି, କୌପୀନ ଦିଶେ ନାହିଁ '। ଏହାଂକ ଖାଦ୍ୟ 'ଦଶସେର ନିରୁତା ଦୁଧ ଆଉଟି ଆଉଟି ପାଞ୍ଚସେର ରହିବ । ଅଳତା ପଡ଼ା ପରି ଉପରେ ସର ପଡ଼ିବ XX ଆଉ ତୋଳାଏ ଆପୁ, ପାଏ ଗଞ୍ଜେଇ' ତାଙ୍କର ଗଞ୍ଜେଇ ଚିଲମଟି ହାତେ ଲମ୍ବର । ରାମ ସାଉ, ଶାମ ସାଉ ଭାଇଙ୍କ ସମ୍ପତ୍ତି 'ବାଣ୍ଟ ମକଦ୍ଦମା ପ୍ରସଙ୍ଗରେ ତାଙ୍କ ଚିଲମ ନିଆଁ କଥାକହିବ ବୋଲି ଘୋଷଣା କରିଥିଲେ ଓ ଅଗିରାପୂର୍ଣ୍ଣମୀରେ ଧୂନି ଥାପନା କରି ଅଗ୍ନିଦେବତାଙ୍କ ଦ୍ୱାରା ବରଦିଆଇବାର ପ୍ରତିଶ୍ରୁତି ଦେଇଥିଲେ । ଶେଷକୁ ସେହି ଧୂନିରେ ସେ ପୋଡ଼ିହୋଇ ମଲେ । ଦଶପଲ୍ଲୀରେ ଘଟିଥିବା ଏକ ଘଟଣା ଗଳ୍ପର ଭିତ୍ତି ଭୂମି । ବାନ୍ଦର ଦାସ ଘଟଣାର କେନ୍ଦ୍ରୀୟ ରୂପକାର ।

**ବାଦଲ ସିଂ** - (ଲଛମା) ଏକବିଂଶଂତି ଅଧ୍ୟାୟରେ ଅତ୍ୟନ୍ତ ନାଟକୀୟଭାବେ ଏହି ଚରିତ୍ରଟି ଉପନ୍ୟାସକୁ ଆସେ ଓ ଜୀବନ ବିପନ୍ନ ନବାବ ଆଲିବର୍ଦ୍ଦିଖାଁକୁ ରକ୍ଷା କରେ । ବାଇଶତମ

ଅଧାୟ ଏହାରି ନାମରେ ନାମିତ । ପିତାଙ୍କ ନାମ ହରିଭଜନ ସିଂ, ମାଆ ଶ୍ୟାମାବାଈ । ନବାବଙ୍କୁ ନିଜ ପରିଚୟ ଦେବା ଛଳରେ ଶ୍ୱଶୁର ଧେଓଁକଲ ସିଂ, ନିବାସ ରୋହିଲା ଖଣ୍ଡ କହିବା ବେଳେ ପାଠକ ଏହାକୁ ଇଛମାର ସ୍ୱାମୀ ବୋଲି ଜାଣିପାରନ୍ତି । ବାଦଲ ଜଗନ୍ନାଥ ଦର୍ଶନପାଇଁ ଯାଉଥିବା ଅବସରରେ ଗୋଡ଼ିଖାଲ ଠାରେ ବର୍ଗୀ ଆକ୍ରମଣ ଯୋଗୁଁ ବିଚ୍ଛିନ୍ନ ହୋଇ ପ୍ରତିଶୋଧ ନେବା ଆଶାରେ ଘୁରି-ବୁଲୁଥିଲା । ନବାବ ନିଜ ପ୍ରାଣରକ୍ଷାର କୃତଜ୍ଞତା ସ୍ୱରୂପ ତାକୁ ହଜାରେ ପାଇକ ଉପରେ ହାବିଲଦାର ପଦରେ ନିଯୁକ୍ତ କଲେ । ବର୍ଗୀ ଆକ୍ରମଣରେ ତାର କାନଟିଏ କଟିଯାଇଥିବାରୁ ସମସ୍ତେ ତାକୁ କାନକଟା ହାବିଲଦାର ବୋଲି ମଧ ଡ଼ାକୁଥିଲେ । ନବାବ ବର୍ଗୀମାନଙ୍କ ସହ ସନ୍ଧିକରିବାପାଇଁ ସ୍ଥିରଚିତ୍ତ ହୋଇଥିବା ବେଳେ ସେ ନବାବଙ୍କୁ ପ୍ରତିଶୋଧ ନେବାପାଇଁ ପ୍ରବର୍ତ୍ତାଇଛି । ଏଥିରୁ ତାର ପ୍ରତିହିଂସା ପରାୟଣତା ଜଣାପଡ଼େ । ସେ ମଧ କପଟସନ୍ଧି ସମ୍ପର୍କରେ ନବାବଙ୍କ ସହ ପରାମର୍ଶ କରିଥିଲା । ନବାବଙ୍କର ସେ ଥିଲା ପ୍ରିୟ ଓ ବିଶ୍ୱାସୀ । କର୍ତ୍ତବ୍ୟ ପାଳନରେ ତାର ଉତ୍ସାହ ଓ ସ୍ଫୂର୍ତ୍ତି ଥିଲା ଅସାଧାରଣ । ଉପନ୍ୟାସର ଉତ୍ତରାର୍ଦ୍ଧରେ ବାଦଲର ପ୍ରଭାବ ସ୍ୱୀକାର୍ଯ୍ୟ । ବଣ ବିଷ୍ଣୁପୁରକୁ ନିଷ୍କର ପୁରସ୍କାର ପାଇ ବାଦଲ ରାଜଧାନୀ ସ୍ଥାପନା କରି ଉପନ୍ୟାସର ପରିଣତିରେ ରାଜା ଭାବେ ରହିଥିଲା ।

**ବାସୁଦେବ** - (ରେବତୀ) ଗଳ୍ପର ନାୟକ । କଟକ ଜିଲ୍ଲାର ପାଟପୁର ଗାଁର ଅପର ପ୍ରାଇମେରୀ ସ୍କୁଲର ଶିକ୍ଷକ । ଦରମା ଚାରିଟଂକା । କଟକ ନର୍ମାଲ ସ୍କୁଲର ଅବଧାନ ବିଭାଗରୁ ଉତ୍ତୀର୍ଣ୍ଣ ଛାତ୍ର । ଗୋଟିଏ ଚାଉଳରେ ଗଢ଼ା । ବୟସ ଆନ୍ଦାଜ କୋଡ଼ିଏ । ମୁଣ୍ଡରେ ତଡଲା ବୋତଲର ଚିହ୍ନ । ମା ଛେଉଣ୍ଡ ପିଲା । ମାମୁଘରେ ମଣିଷ ହୋଇଥିଲା । ଜାତି କରଣ । ଜାତିଗତ ସମାନତା ଦୃଷ୍ଟିରୁ ଶ୍ୟାମବନ୍ଧୁ ପରିବାର ସହ ଘନିଷ୍ଠତା ଓ ତାଙ୍କର ଏକମାତ୍ର ସନ୍ତାନ ରେବତୀକୁ ପାଠ ପଢ଼ାଇବା ପାଇଁ ନିଯୁକ୍ତ । ଶ୍ୟାମବନ୍ଧୁଙ୍କ ବିୟୋଗ ପରେ ବାସୁଦେବ ତାଙ୍କ ପରିବାରର ଦାୟିତ୍ୱ ଗ୍ରହଣ କରିଥିଲା । ରେବତୀ ପ୍ରତି ଏହାର ଦୁର୍ବଳତା ପ୍ରକାଶିତ ହୋଇଥିଲା । ପାଞ୍ଚଦିନପାଇଁ ଡିପୋଟି ସବ୍‌ଇନିସ୍‌ପେକ୍ଟରଙ୍କ ପାଖକୁ ପିଲାଙ୍କୁ ନେଇକରି ଯାଇଥିଲା । ଫେରିବା ରାସ୍ତାରେ ଅକସ୍ମାତ ବାଡ଼ିରେ ମୃତ୍ୟୁ ବରଣ କରିଥଲା । ଶ୍ୟାମବଂଧୁ ପରିବାରର ସ୍ୱପ୍ନ ଭାବେ ଏ ଚରିତ୍ରଟି ଆସିଚି ଓ ତାର ଅକାଳମୃତ୍ୟୁ ସେ ସ୍ୱପ୍ନକୁ ସାକାର କରିପାରିନାହିଁ ।

**ବିଦିଆ ପାତ୍ର** - (ବଗଲା ବଗୁଲୀ ) ଭୁଷଣ୍ଡପୁର ଗାଁର ଚଉକିଆ । ଜାତିରେ କଣ୍ଡରା । ସତ୍ୟବନ୍ତ, ଧାର୍ମିକ । ଗାଁଲୋକେ ଯାକୁ ମାନନ୍ତି । ମୃତଦାର । ଏକମାତ୍ର ପୁଅକୁ ଭାଗବତଘର ପିଣ୍ଡାତଳେ ଶୁଆଇ ଦେଇ ରାତିରେ ଗାଁ ଜଗେ । ଚାଳିଶ-ପଚାଶ ବର୍ଷଧରି ପୁରାଣ ଶୁଣିଶୁଣି ଭଲ ବ୍ୟାଖ୍ୟା କରିପାରେ ଓ ମୁହେଁ ମୁହେଁ କହି ଯାଇପାରେ । ତାର ଭଲଗୁଣ ହେତୁ ଗାଁଲୋକେ ତା ପୁଅର ବିବାହ ଖର୍ଚ୍ଚ ତୁଲାଇଛନ୍ତି । ଅତିତ ନିର୍ମାୟା ମଣିଷଟିଏ । ସେ ପୁଅ ବିବାହର ଚାରିଛମାସ ପରେ ତାର ଦେହାନ୍ତ ହୋଇଥିଲା ।

**ବିଦିଆ ବାରିକ** - (ସଭ୍ୟଜମିଦାର) ଜମିଦାର ବଳରାମ ବଳଙ୍କ ଚାକର ।

**ବିଦେଇ ବେହେରା** - (ପ୍ରାୟଶ୍ଚିତ୍ତ) ନାଉରିଆ । ସମସରପୁର ଯିବାବେଳେ ଗୋବିନ୍ଦଙ୍କୁ ବଡ଼ନାଆ ନଥିବା ଦର୍ଶାଇ ନଈ ପାର କରାଇନପାରିବା କଥା କହିଥିଲା ।

**ବିଦେଇ ମହାନ୍ତି** - (ପ୍ରାୟଶ୍ଚିତ୍ତ) ବୈଷ୍ଣବଚରଣଙ୍କ ପାଖ କରଣ । ପୁତ୍ରର ଅପ୍ରତ୍ୟାଶିତ ବିବାହରେ ଦାରୁଭୂତ ଜମିଦାରଂକ ହାତଧରି ନିତ୍ୟକର୍ମାଦିପାଇଁ ଉଠାଇଥିଲେ ।

**ବିଦ୍ୟାଧର** - (ଅଧର୍ମବିତ୍ତ) କୁବେର ସାହୁ ଓ କମଳା ସାହୁଆଣୀର ପୁତ୍ର । ମାତୃଭକ୍ତ, ଦୟାଳୁ । ବାପା କୁବେର ସାହୁଙ୍କର ସୁଧଖୋର ମନୋବୃତ୍ତି ଏହାଂକ ଠାରେ ନାହିଁ । ଯୌତୁକ ଓ କନ୍ୟା ପଦ୍ମାବତୀସହ ଆଷାଢ଼ଶୁକ୍ଳ ଦଶମୀରେ ଶ୍ୱଶୁର ଯୁଧିଷ୍ଠିର ସାହୁ ଘରୁ ନିଜଗାଁ ମକ୍ରାମପୁରକୁ ଫେରିଲେ । ବାଟରେ ଦୁର୍ଘଟଣା ହେତୁ ତାଙ୍କର ସର୍ବନାଶ ହେଲା । ବିଦ୍ୟାଧରଙ୍କ ପିତୃବିୟୋଗ, ଧନହାନୀ ଓ ପତ୍ନୀବିଚ୍ଛେଦ ଘଟିଲା । ଶେଷରେ ବର୍ଷକ ପରେ ଅଧରାତିରେ ମହାନଦୀ କୂଳରେ ପତ୍ନୀ ପଦ୍ମାବତୀକୁ ସେ ଉଦ୍ଧାର କଲେ । ପରେ ସୁସ୍ଥ ହୋଇ ନିଜ ସେ ଘରକୁ ଫେରି ବାପା କୁବେର ସାହୁ ଅନ୍ୟାୟରେ ଯେଉଁ ସମ୍ପତ୍ତି ଆତ୍ମସାତ୍ କରିଥିଲେ ତାହାର ଗୁଚ୍ଛା, ତମସୁକ ଲୋକଙ୍କୁ ଫେରାଇଲେ ବା ପୋଡ଼ି ପକାଇଲେ ।

ନିଜର ସ୍ଥାବର ଅସ୍ଥାବର ସମ୍ପତ୍ତି ଲୋକଙ୍କ ମଧରେ ବାଣ୍ଟିଦେଇ ସନ୍ୟାସ ନେବା ସଂକଳ୍ପକରି ଶ୍ୱଶୁରଙ୍କୁ ଶେଷଦର୍ଶନ କରିବା ଇଚ୍ଛାରେ ବୌଦ ଫେରିବା ବାଟରେ ପଦ୍ମାବତୀଙ୍କୁ ଫେରିପାଇ ପୁନଶ୍ଚ ସୁଖମୟ ଦାମ୍ପତ୍ୟ ଜୀବନ ଆରମ୍ଭ କଲେ । ଶ୍ୱଶୁରଙ୍କର ସମ୍ପତ୍ତିର ଉତ୍ତରାଧିକାରୀ ହୋଇ ନ୍ୟାୟ ଓ ଧର୍ମରେ ଜୀବନ ବିତାଇଲେ ।

**ବିଦ୍ୟାଧର କବିଶିରୋମଣି ଧନ୍ୱନ୍ତରୀ** - (ମାମୁଁ) ଉତ୍ତରରାୟ ଉଆସର ରାଜବୈଦ୍ୟ । ଦାଶରଥି ଦାସଙ୍କ ଅସୁସ୍ଥତା ଯୋଗୁଁ ସେ ଜମିଦାର ଜାମାତା କର୍ତ୍ତୃକ ପ୍ରେରିତ ହୋଇ ଦାଶରଥି ଦାସଙ୍କୁ ଚିକିତ୍ସା କରୁଥିଲେ , ଶେଷକୁ ଜବାବ୍ ଦେଇଥିଲେ, ଯେ ରାଜଯକ୍ଷ୍ମା ! ଭଲହେବା ଅସଂଭବ !!

**ବିନୋଦ** - (ରାଣ୍ଡୀପୁଅ ଅନନ୍ତା) ଜନୈକ ଛାତ୍ର । ଏହାକୁ ଘରୁ କିପରି ଧୂଆଁପତ୍ର ଆଣିବାକୁ ହେବ ଅଥଚ କେହି ଜାଣିପାରିବେନାହିଁ, ସେଇ ବୁଦ୍ଧି ଅବଧାନ ବତାଇଥିଲେ ।

**ବିନୋଦ ମହାନ୍ତି** - (ପ୍ରାୟଶ୍ଚିତ୍ତ) ସମସରପୁର ଉଆସର ଛାମୁପାଞ୍ଜିଆ । ସଇତାର ଗୋବିନ୍ଦଙ୍କୁ କଟକ ନେଇଯିବାର ଅନୁରୋଧ, ସେ ସଂକର୍ଷଣ ମହାନ୍ତିଙ୍କୁ ଜଣାଇଥିଲା ।

**ବିନୋଦିଆ** - (ମାଧ ମହାନ୍ତିଙ୍କ କନ୍ୟାସୁନା) ମଠ ମହନ୍ତ ଲଛମନ ଦାସଙ୍କ କୋଠଚାକର । ମାଧ ମହାନ୍ତଙ୍କ ଆଗରେ ଏହାକୁ ମିଛରେ ଶ୍ରୀ ଶ୍ରୀ ବିନୋଦବିହାରୀ ଗନ୍ତାଘର ରାୟ, ଘର ମିଛୁପୁର, ଜମିଦାର ତାଲୁକେ ଆକାଶ ପୁର, ରୂପେ ପରିଚିତ କରାହୋଇଛି । ପ୍ରକୃତରେ ଏହାର ଘର ହାଟ ଗାଁ ମନ୍ଦିରଠାରୁ ଚାରିକୋଶ ଦୂର । ବୟସ ବାଇଶି-ତେଇଶି । ଚେହେରା ଡଉଲଡାଉଲ । ଖୁବ୍ କାମିକା ଓ ନିର୍ଲୋଭ । ଏକାନ୍ତ ବିଶ୍ୱାସୀ, ତେଣୁ ମଠରୁ ସବୁ ଟଂକାପଇସା

ଜିନିଷପତର ଯାର ଜିମା । ଦରମା ଦୁଇଟଂକା, ତେଣୁ ବିବାହରେ କନ୍ୟାସୁନା ଦେବାର କ୍ଷମତା ନାହିଁ, ମଠ ମହାନ୍ତଙ୍କର ବିଶ୍ୱାସ ଓ ସ୍ନେହଭାଜକ ଥିବାରୁ ସେ ଦୟାପରବଶ ହୋଇ ଚତୁରତାର ସହ କୃପଣ କନ୍ୟାସୁନା ଲୋଭୀ ମାଧମହାନ୍ତିଙ୍କର ସର୍ବଗୁଣ ସଂପନ୍ନ, ଝିଅ ମାଳତୀସହ ଏହାର ବିବାହ କରାଇଦେଇଛନ୍ତି ।

ବିନ୍ଧିଆଚନ୍ଦ - (ରାଣ୍ଡୀପୁଅ ଅନନ୍ତା) ଜନୈକ ଚନ୍ତୀ ମହାଜନ । ଅନନ୍ତା ଚରିତ୍ରକୁ ଚିତ୍ରଣ କରିବାକୁ ଏ ଚରିତ୍ରର ଅବତାରୀ କରାଯାଇଛି । ଦୋକାନଘର ନିର୍ମାଣବେଳେ ମଝିର ଅଠରହାତି ଖମ୍ବ ଦୁଇଟା ଟେକିଦବାକୁ କହି ଦିଟଂକାର ଖଜାଖିଆ ଦେବାର ପ୍ରଲୋଭନ ଦେଖାଇବାରୁ ଅନନ୍ତା ରାଗିଯାଇ, ଏହାର ସବୁ ଖମ୍ବ ଓପାଡ଼ି ଦେଇଥିଲା ।

ବିମଳା ଦେଈ - (ସୁନାବୋହୂ) ରାମହରି ପଟ୍ଟନାୟକଙ୍କ ସ୍ତ୍ରୀ । 'ବଡ଼ ଦୟାବତୀ, ହେଙ୍ଗଲୀ, ସରଳା ଥିଲେ ।' ବିଧବା ହେବା ପରେ ଆପଣା ସଞ୍ଚୟ ଓ ଗହଣା ବିକି ସେ ପୁଅର ପାଠପଢ଼ା ବଜାୟ ରଖିଥିଲେ । ବୋହୂ ପ୍ରତି ସ୍ନେହଶୀଳା ।

ବିରେଇ ବିଶାଳ - (ବିରେଇ ବିଶାଳ) ବିରେଇ ବିଶାଳ ଗଳ୍ପର ମୁଖ୍ୟ ଚରିତ୍ର । ମୁକୁନ୍ଦପୁର ମକୁ ବିଶାଳର ପୁଅ । ଜନ୍ମ ତୁଳା ଛ'ଦିନ । ପାଟକ ବଳରାମ ଗୋତ୍ରୀ । ବାପ ମଲା ବେଳକୁ ପାଞ୍ଚ ବର୍ଷର ଛେଉଣ୍ଡ । ମାମୁଁ ପୀତେଇ ପାତ୍ରଦ୍ୱାରା ପାଳିତ । ଧୀର, ପଢ଼ାରେ ମନଯୋଗୀ । ଆଠବର୍ଷ ବୟସରେ ଖଡ଼ିପାଠ, ମିଶାଣ, ଫେଡ଼ାଣ, ହରଗୁଣ ଛିଡ଼ାଇ ରାସପୋଥି ଧରିଛି । ବୁଦ୍ଧିମାନ । ମାତ୍ର ମାଇଁ ହେତୁ ପାଠପଢ଼ା ବନ୍ଦ ହୋଇଯାଇଛି । ଶେଷରେ ମାଇଁଙ୍କ ପ୍ରରୋଚନାରେ ମାମୁ ଏହାକୁ ଗାଈ ଜଗିବା କାମ ଦେଇଛନ୍ତି । ମାମୁ ଘରର ସମସ୍ତ ଗାଈପଲ ବାସ୍ତବରେ ତା ନିଜର ।

ଅଠରବର୍ଷ ବୟସରେ ଖୁବ୍ ପାରଙ୍ଗମ ହୋଇ ଉଠି ବିରେଇ ମାମୁଁର ବାଟିବାଟି ଚାଷକୁ ଯୋଡ଼େ ବାରିମାସିଆ ଧରି ସମ୍ଭାଳିଛି ।

ଇଏ ଦେଖିବାକୁ ଡଉଲ, ମଧୁରଭାଷୀ, ବାଘପରି ବଳବାନ । ମାରଣା ବଳଦର ଲାଞ୍ଜଧରି ଭିଡ଼ିଆଣିପାରେ । ଗାଁରେ ସର୍ଭିଙ୍କର ପ୍ରିୟ । ଗାଁ ଲୋକଂକଦ୍ୱାରା ସର୍ବଦା ପ୍ରଶଂସିତ । ନିଜର ସଂସାର ପ୍ରତି ଗାଁ ବାଳାଂକଦ୍ୱାରା ସଚେତନ । ମାମୁଁ ମା ଅନ୍ୟାୟ ଅଭିସନ୍ଧି ସଂପର୍କରେ କ୍ରମଶଃ ସଚେତନ । ମାଇଁଙ୍କ କଠୋର ବାକ୍ୟବାଣରେ 'ଏକ କାନିଆ ପାଞ୍ଚଶଧରି' ମାମୁଁ ଘର ଛାଡ଼ି ଚାଲି ଯାଇଛି । ନିଜ ଜନ୍ମ ଗାଁକୁ ଫେରିଯାଇ ବାପର ପନ୍ଦର ମାଣ ଜମି ଭାଗ ଲଗାଇ ମୂଳ ଲଗାଇ ନିଜେ ମୂଳ ଲାଗିଛି । ରହିବା ମାପି ଘର କରିଛି । ବର୍ଷେ ଚାରିଟାରେ ବାପର ସମ୍ପତ୍ତି ତୁଲ୍ୟ ସମ୍ପତ୍ତି କରି ପାରିଛି । ତିରିଶ ବର୍ଷ ବୟସ ବେଳକୁ ବିବାହ ପାଇଁ ଟଂକା ଜମା କରି ପାରିଛି ।

ରାଘବ ପାତ୍ର ଝିଅ କମଳୀକୁ ପିଲାଦିନୁ ପସନ୍ଦ କରିଥିଲା । ରୋଜ ଦି ଓଳି ବିଲକୁ ଯିବା ଆସିବା ରାସ୍ତାରେ କମଳୀକୁ ଦେଖେ । କମଳୀ ସହ ବିବାହ ସାତ ଶହ ଟଂକାରେ ଛିଣ୍ଡାଇଛି । ପ୍ରଥମେ ଦୁଇଶହ ପରେ ବେଦୀରେ ପାଞ୍ଚଶହ ଟଂକା ଦେବାର ନିଷ୍ପତ୍ତି ହୋଇଛି । ଟଂକାପାଇଁ ଧାନ ଓ ଗୋରୁ ବିକିଛି । କମଳୀ ନିଜ ସହ କନ୍ୟାସୁନା ଧନତକ ବାପଘରୁ ଲୁଚାଇ ନେଇଆସିବାରୁ ପରେ ପୁଣି ସବୁ ବିକିଲା ଜିନିଷ ଫେରାଇ ଆଣିଛି । ମାମୁଁ ମାଇଁ ନିର୍ଦ୍ଧନ ଅବସ୍ଥାରେ ଦାଣ୍ଡ ବରଗଛ ମୂଳେ ବସିଥିବା ବେଳେ ତାଂକୁ ଆଣି ସେବା ଶୁଶ୍ରୁଷା କରି ଆପଣା ପାଖେ ଆଶ୍ରୟ ଦେଇଛି । ମାମୁଁ ପୁଅ ଚଣ୍ଡିଆକୁ ଜେଲରୁ ମୁକୁଳେଇବାକୁ ଚେଷ୍ଟା କରିଛି ।

ଇଏ ଦୟାଳୁ, ବୁଦ୍ଧିମାନ, ପରିଶ୍ରମୀ ଓ ସହିଷ୍ଣୁ ।

**ବିଶାଖା -** (ମାମୁ) ନାଜର ନଟବରଙ୍କ ସ୍ତ୍ରୀ । କୋଷ୍ଠି ଦେଖି ଗଣକ କେବେଠୁ କରିଥିଲେ, 'ଏ କନ୍ୟାକୁ ଲକ୍ଷ୍ମୀଛାଡ଼ ପଡ଼ିବନାହିଁ, ଗୋଟାଏ ରାଣୀହୋଇ ରହିବ.....' ସେଇ କଥାକୁ ସେବଠୁ ଗଣ୍ଠିକରି ନଟବର କନ୍ୟା ଦେଖିବାକୁ ସୁଦ୍ଧା କାହାରିକୁ ପଠାଇଲେ ନାହିଁ । ବିଭାହୋଇ ପଡ଼ିଥିଲେ । ବାପା ଛକଡ଼ି ପଟ୍ଟନାୟକ ଜମିଦାରଘରେ ପିଆଦା ଥିଲେ । ବିଭା ପରେ ଗ୍ରାମର ଅନ୍ୟ ସ୍ତ୍ରୀମାନଙ୍କ ମୁହଁରେ ଢଗ ମେଲିଦେଇ ଫକୀରମୋହନ ଏହାଙ୍କ ରୂପଗୁଣର ସୂଚନା ଦେଇଛନ୍ତି - 'ପେଟ୍‌ଟି ଜିଣିଛି, ଧାନଉଁଷାହାଣ୍ଡି', 'ଧାଇଁ ଯାଉଥାଏ ଭାଲୁ', 'ପେଚାନାକଟା', 'ତାମରକେଶ' 'ଆଖି ଦୁଇଗୋଟି ମିଟିରି ମିଟିରି, କେମ୍ପାଟି ଡେବିରି ହାତ', 'ଛେଳିପାଟିପରି ସବୁବେଳେ ବୁଲେ ଗାଲରେ XX ପାନ', 'ଦାନ୍ତ ଗୁଡ଼ା ବଡ଼ସାନ', 'ମୁଖଚନ୍ଦ୍ରଟା'ର ଥାଳିପଟପରି ଚକା' 'ପାଟିମେଲି କଥାଗୁଡ଼ା ବୋଲିବାର ବିଲୁଆ ପାଡୁଛି ଡକା' । ଶ୍ୱଶୁରଙ୍କ ଅସୁସ୍ଥତା ବେଳେ ଏହାଙ୍କ ଆଚରଣଥିଲା, 'ସଂଜ ଯିମିତି ବାଜିଲା କି ନ ବାଜିଲା ସାନବହୂର ମୁଣ୍ଡ ବଥେଇଲା- ଶୋଇପଡ଼ନ୍ତି । ଶାଶୁ ରଣ୍ଡାବଢ଼ାକରି ବହୁତ ଡକାଡ଼କି କରି ଉଠାଇଲେ ପଥି ଚାରିଟା ପେଟରେ ପଡ଼େ । ଗୋଟିଏ କୁଶଳର କଥା ଏତେ ରୋଗରେବି ତାଂକୁ ଅରୁଚି ଧରୁନାହିଁ । ଅଇଁଠାକଂସା ଖଣ୍ଡ ଠା'ରେ ପଡ଼ିଥାଏ, ଆରଦିନ ସକାଳେ ଶାଶୁ ଅଥବା ବଡ଼ ଯା' 'ବିଛାଳି ପକାନ୍ତି' । ବିଶାଖାଙ୍କପାଇଁ 'ଗୋଟିଏ ଗୋଟିଏ ପଇସା ଦେହର ରକ୍ତ । XX ନାଜରଂକ ଇଚ୍ଛା ତାହି-ଦିହିଙ୍କ ମନ ଖୁବ୍ ମିଳିଯାଇଛି ।' ଚିତ୍ରକଳା ସଂପର୍କୀୟ ତା'ମନର ସନ୍ଦେହକୁ ଧନସଂପତ୍ତି ପ୍ରାପ୍ତିର ସମ୍ଭାବନା ଦେଖାଇ ନାଜର ଧୋଇଦେଇ ପାରିଥିଲେ । ସେଇ ଚିତ୍ରକଳା ଶେଷକୁ ଏହାଂକ ସରଳତାର ସୁଯୋଗନେଇ ତାଂକର ଚରମ ଦୁର୍ଯୋଗରେ ଗହଣା ପୁଟୁଳିଟି ନେଇଯାଇଥିଲା । ବିଶାଖା ସ୍ୱାମୀ ଅନୁରୂପ ଅର୍ଥଗୃଧ୍ନୁ ମାତ୍ର କୁଟିଳ ନୁହନ୍ତି ।

**ବିଶାଳାକ୍ଷ ପଟ୍ଟନାୟକ ବିଦ୍ୟାଧର ମହାପାତ୍ର -** (ପ୍ରାୟଶ୍ଚିତ୍ତ) ବୈଷ୍ଣବ ଚରଣଙ୍କ ପିତା । ଏହାଙ୍କ ସମୟରୁ କରଣମାନଙ୍କ ଶ୍ରେଣୀନେଇ ମତାନ୍ତର ସୃଷ୍ଟିହୋଇଥିଲା ।

**ବିଶୁ ମହାନ୍ତି -** (ମାମୁ) କାକଟପୁର ମୌଜା ନିବାସୀ । ଦାଶରଥିଙ୍କ ବଡ଼ପୁଅ ବାନାମ୍ବରକୁ ବିବାହ କରିଥିଲା ଏହାଂକ ଝିଅ ।

**ବିଶୁରଥ** - (ମାଧମ ହାନ୍ତିଙ୍କ କନ୍ୟାସୁନା) : ପୁରୋହିତ । ମଠମହନ୍ତଙ୍କ ଜିଜ୍ଞାସାର ଉତ୍ତରରେ ମାଛିଆପାତକ ଲାଗିବାର କାରଣ ନିର୍ଦ୍ଦେଶ କରି କହିଛନ୍ତି ଯେ 'କନ୍ୟାସୁନା' ନେଇଥିବା ଲୋକର ମୁଣ୍ଡରେ ପୋକପଡ଼େ ।

**ବିଶ୍ୱନାଥ ଶତପଥୀ** - (ପ୍ରାୟଶ୍ଚିତ୍ତ) : ସମସରପୁର ଜମିଦାର ସଂକର୍ଷଣ ମହାନ୍ତିଙ୍କ ପୁରୋହିତ । ଅରକ୍ଷିତା କନ୍ୟାପାଇଁ ଲଗ୍ନବିଚାର ଅନାବଶ୍ୟକ ବୋଲି ବିଧାନ କରିଛନ୍ତି । ଫଳତଃ ଢେମା ଇନ୍ଦୁମତୀର ବିବାହ ଦିନ ଧାର୍ଯ୍ୟ ହୋଇପାରିଚି ।

**ବିଷ୍ଣୁପଣ୍ଡା** - (ବଗଲା ବଗୁଲୀ) : ଭୁଷଣ୍ଡପୁର ଗାଁ'ର ପୁରୋହିତ ଓ ପୁରାଣ ପଣ୍ଡା ।

**ବୀରବର ମଲ୍ଲ ମର୍ଦ୍ଦରାଜ ଉତ୍ତର ରାୟ** - (ମାମୁ) : ନରିପୁର ଚୌପାଢ଼ୀରେ ମହାରାଜାଙ୍କ ନିଯୁକ୍ତ ପ୍ରଥମ ସେନାପତି । ମାମୁ ଉପନ୍ୟାସର ବିଶିଷ୍ଟ ଚରିତ୍ର ପ୍ରତାପଉଦିତ ମଲ୍ଲ, ପିତାମ୍ବର ଛୋଟରାୟ ଆଦିଂକ ପୂର୍ବପୁରୁଷ ।

**ବୀରେଶ ଲିଙ୍ଗମ୍** - (କମଳା ପ୍ରସାଦ ଗୋରାପ) ବାବୁରାମହରି ନାୟକଂକ ତେଲେଙ୍ଗା ଗୁମାସ୍ତା । ବାବୁଙ୍କ ଓଡ଼ିଶା ବାହାରର ବିଶେଷତଃ ଦକ୍ଷିଣ ବନ୍ଦରର କାରବାରର ଅଣଓଡ଼ିଆ କାଗଜପତ୍ର ତନଖି ୟାଂକ ଜିମ୍ମାରେ ହେଉଥିଲା ।

**ବୁଧେଇ ଝପଟ ସିଂ** - (ଛମାଣ ଆଠଗୁଣ୍ଠ) : ଚଂପାର ଖୁଣି ତାଦାରଖି ବେଳେ ଜମାଦାର ଏହା ଏକ 'ସାପକାଟି' ବୋଲି କହିଥିଲେ ମୁଗପୁର ମୌଜାର ଏ ଚରିତ୍ର ପୂର୍ବ ରାତିରେ । ମୃତ ସ୍ତ୍ରୀଲୋକଟି (ଚଂପା) ଶୋଇଥିବାବେଳେ ଗୋଟିଏ ତମ୍ପସାପ ବୁଲୁଥିବାର ପ୍ରମାଣ ଦେଇଥିଲେ ।

**ବୈଦୀ ଶେଠୀ** - (ବାଲେଶ୍ୱରୀ ଗହାଜାନୀ) ଡକାୟତଦଳର ଅନ୍ୟତମ ସର୍ଦ୍ଦାର । ଏହାଙ୍କ ସଂପର୍କରେ ବିଶେଷ କୌଣସି ବର୍ଣ୍ଣନା ନାହିଁ, କେବଳ ନାମୋଲ୍ଲେଖ ଘଟିଛି । ଡକାୟତମାନେ ଧରାପଡ଼ିବା ବେଳେ ଯେ ଖସିଯାଇଥିବା ସୂଚିତ ।

**ବୈରୀଗଞ୍ଜନ ମାନଧାତା** - (ଲଛମା) : ପୁରାନାମ ସାମନ୍ତରାୟ ରାଘବରାଟ ସିଂହ ବୈରୀ ଗଞ୍ଜନ ମାନଧାତା । ସେ ଥିଲେ ରାଇବଣିଆ ଦୁର୍ଗର ଅଧିପତି । ମୁର୍ଶିଦାବାଦ ଦରବାର ଏହାଙ୍କୁ ମରହଟ୍ଟାମାନଙ୍କୁ ସହଜରେ ସୁବର୍ଣ୍ଣରେଖା ପାରି କରାଇ ନଦେବାକୁ ସନନ୍ଦ ଦେଇ କମର୍ଦ୍ଧା ଚକଡ଼ା ପୁରସ୍କାର ଦେଇ ମିତ୍ରତା କରିଥିଲେ । ରାଇବଣିଆ ଯୁଦ୍ଧରେ ସେ ବର୍ଗୀମାନଙ୍କଦ୍ୱାରା ଧରା ପଡ଼ିଥିଲେ ଓ ମୃତ୍ୟୁ ବରଣ କରିଥିଲେ । କରୁଣା ଓ ଉଦାରତାରେ ଏ ଚରିତ୍ର ଅନନ୍ୟ । ଏହି ଚରିତ୍ର ମାଧମରେ ଓଡ଼ିଆ ଖଣ୍ଡାୟତଙ୍କ ବୀରତ୍ୱ, ଧୈର୍ଯ୍ୟ ଓ ସାହସର ପରିଚୟ ମିଳେ ।

**ବୈଷ୍ଣବଚରଣ ପଟ୍ଟନାୟକ ବିଦ୍ୟାଧର ମହାପାତ୍ର** - (ମାମୁ) : ଅସୁରେଶ୍ୱର ପ୍ରଗଣାର ଜମିଦାର । ଏ ପ୍ରଗଣା ନିରୋଳ କରଣବସ୍ତି । ଏଇ କରଣମାନେ ନିଜକୁ ସମ୍ଭ୍ରାନ୍ତ ମନେକରୁଥିଲେ ଓ ନିଜକୁ ଶ୍ରୀକରଣ ବୋଲାଉଥିଲେ । ଯେ ସଂକର୍ଷଣ ମହାନ୍ତିଙ୍କ ଖ୍ୟାତିକୁ ସହିପାରୁନଥିଲେ । କୁଳଦେବତା ଗୋବିନ୍ଦଜୀଉଙ୍କ ଆଜ୍ଞାରେ ସଂସାରର ସବୁକିଛି ଘଟୁଛି ଏପରି ଧାରଣା ତାଂକର ଥିଲା । ସଂସାର ଭିତରେ ଥାଇ ସନ୍ୟାସୀବତ୍ ଥିଲା ତାଂକର ଆଚରଣ । ଏକମାତ୍ର ସଂତାନ

ଗୋବିନ୍ଦର ଅପ୍ରତ୍ୟାଶିତ ସଂକର୍ଷଣ ମହାନ୍ତିଙ୍କ କନ୍ୟା ଇନ୍ଦୁମତୀକୁ ବିବାହ କରିବା ଘଟଣା ଓ ପରେପରେ ସ୍ତ୍ରୀଙ୍କ ମୃତ୍ୟୁ, ଗୋବିନ୍ଦର ପତ୍ନୀର ମୃତ୍ୟୁ ଆଦିରେ ତାଂକର ସଂସାର ବିରାଗୀମନ ଅଧିକ ମୁକ୍ତ ହୋଇଯାଇଥିଲା ଓ ସେ ସନ୍ନ୍ୟାସ ଗ୍ରହଣ କରି ବୃନ୍ଦାବନରେ ରହିବାକୁ ଲାଗିଲେ ।

**ବୈଷ୍ଣବ ମହାନ୍ତି** - (ରାଣ୍ଡୀପୁଅ ଅନନ୍ତା) ଗାଁର ଅବଧାନ । ଅନନ୍ତାର ଶିକ୍ଷାଗୁରୁ । ଏହାର ଉତ୍ପାତରେ ଅବଧାନ ଘୋର ବିରକ୍ତ ହେଉଥିଲେବି ଅନନ୍ତାର ମା' ଦହିବିକି ସାରି ଫେରିବାବେଳେ ଯେଉଁ ଚହ୍ଲା ଦି' ସଢ଼େଇ ମାଗଣା ଦେଇଯାଉଥିଲା, ତାରି ଲୋଭରେ କିଛି କହି ପାରୁନଥିଲେ । ଶେଷକୁ ବାଡ଼େଇବା ଆରମ୍ଭ କଲେ ମାତ୍ର ଅନନ୍ତାର କୌଣସି ପରିବର୍ତ୍ତନ ହୋଇନଥିଲା । ଶେଷକୁ ଦିନେ ଅତିରିକ୍ତ ବିରକ୍ତ ହୋଇ ସେ ବିଛୁଆତି ଡାଙ୍ଗରେ ବାଡ଼େଇ ଥିଲେ । ଅନନ୍ତା ଏହାର ପ୍ରତିଶୋଧ ନେଇଥିଲା ଓ କ୍ରୋଧୋନ୍ମତ୍ତ ଅବଧାନ ସିଂହାଣୀ ପାଖରେ ତା'ପୁଅ ବିଷୟରେ ପଚାରିବାରୁ ସିଂହାଣୀ ତାଙ୍କ ସମ୍ବୋଧନାଦିରେ ଉତ୍କ୍ଷିପ୍ତ ହୋଇ ମାରିଗୋଡ଼ାଇଲା ଓ ତା'ପରଠୁ ଅବଧାନଙ୍କୁ କେହି ଆଉ ସେ ଗାଁରେ ଦେଖିନଥିଲେ ।

**ବ୍ରଜଗୁପ୍ତ** - (ବାଲେଶ୍ୱରୀ ରାହାଜାନୀ) ଜନବିଚର ନାମକ ସାହେବ କିଛି ନିଷ୍କରଭୂମିରେ ସରାଇଘର ନିର୍ମାଣ ଓ ଦୋକାନ ସ୍ଥାପନ କରିଥିଲେ । ଏହାଙ୍କ ଉତ୍ତରାଧିକାରୀଙ୍କଠାରୁ ସେ ଭୂମିର ସ୍ୱତ୍ୱ କ୍ରୟକରି ବ୍ରଜଗୁପ୍ତ ଭୋଗକଲେ । ଗଳ୍ପର ପଟ୍ଟଭୂମି ନିର୍ମାଣ ସୂତ୍ରରେ ଏହି ଚରିତ୍ରର କେବଳଳ ସୂଚନା ରହିଚି ।

**ଭଗିଆ** - (ଛମାଣ ଆଠଗୁଣ୍ଠ) ପୁରା ନାମ ଭଗବାନ ଚନ୍ଦ । ପିତା ଗୋବିନ୍ଦ ଚନ୍ଦ । ସାଧାସିଧା, ଛନ୍ଦ କପଟରୁ ଦୂରରେ ଥାଏ । ଇଏ ତନ୍ତୀମାନଙ୍କର ପରମାଣିକ ଅର୍ଥାତ୍ ମୁଖିଆ । ସ୍ତ୍ରୀ ସାରିଆ । ସେମାନେ ନିଃସନ୍ତାନ । ଛ ମାଣ ଆଠଗୁଣ୍ଠ ପରିମାଣର ଏକ କଳିନ୍ଦ ଜମି ଏମାନଙ୍କର ଥିଲା । ବାପ ଗୋବିନ୍ଦ ଚନ୍ଦ ତାକୁ ଜମିଦାର ବାଘସିଂହ ବଂଶ ପାଖରୁ କିଣିଥିଲା । ଭଗିଆର ହୁଣ୍ଡା ପଣିଆ ସତ୍ତ୍ୱେ ସେ ଲୋକପ୍ରିୟ । ବିବିଧ ସାମାଜିକ ଅନୁଷ୍ଠାନ ଆଦିରେ ଜାତି ଭାଇଙ୍କୁ ଖୁଆଏ । ଭାଟ ଭିକାରି ତା ଦୁଆରୁ ଫେରନ୍ତି ନାହିଁ । ଭଗିଆ ଦମ୍ପତିଙ୍କୁ ଗାଁ ସାରା ଭଲ ପାଆନ୍ତି । ଅଥଚ ଏମାନେ ହେଲେ ସର୍ବାଧିକ ନିର୍ଯାତିତ । ସନାରଣାର ସାକ୍ଷ୍ୟରୁ ଜଣାଯାଏ, ତାରି ପ୍ରରୋଚନାରେ ଭଗିଆ ରାମଚନ୍ଦ୍ରଙ୍କୁ ଜମିବନ୍ଧକ ଲେଖିଦେଲା । ନିର୍ଦ୍ଧାରିତ ସମୟରେ ଋଣ ପରିଶୋଧ କରି ନ ପାରିବାରୁ ସରକାରୀ ଜମାଦାର ତା'ର ଘର ଭାଙ୍ଗିଦେଲେ । ତା' ପରଠାରୁ ଭଗିଆ ବାୟା ହୋଇ ଯାଇଥିଲା । ବାୟା ହେବା ଏ ନିରୀହ ହୁଣ୍ଡା ତନ୍ତୀର ଥିଲା ଅନିବାର୍ଯ୍ୟ ପରିଣତି । ମଂଗରାଜଙ୍କୁ ଜେଲରେ ଦେଖି କାମୁଡ଼ି ଗୋଡ଼ାଇବା ତା'ର ପ୍ରତିହିଂସା ପରାୟଣତା ଓ ନିଷ୍ଫଳ କ୍ରୋଧର ପରିପ୍ରକାଶ ମାତ୍ର । ଭଗିଆ 'ଭାରୀ ବାୟା ହୋଇ ଲୋକଙ୍କ ଉପରେ ଜୁଲୁମ୍' କରୁଥିବାରୁ ତା'ର ସୁରକ୍ଷାପାଇଁ କଟକ ମାଜିଷ୍ଟ୍ରେଟଙ୍କ ପାଖକୁ ପରିଣତି ବେଳେ ପଠାଯାଇଥିଲା ।

**ଭଦରଖିଆ ଟୋକା** - (ପେଟେଣ୍ଟ ମେଡ଼ିସିନ) ବେଶ୍ୟା ଉସମାନତାରାର ଆଗମନ ବାର୍ତ୍ତା ଚନ୍ଦ୍ରମଣିଙ୍କ ପାଖକୁ ବହନକରି ଆଣିଥିବା ଟୋକା । ଚନ୍ଦ୍ରମଣି ବାବୁଙ୍କୁ ସେ ଚିଠିଖଣ୍ଡିଏ ଧରାଇ ଦେଇ ଝଟକ୍ରିଲି ଚାଲିଯାଇଥିଲା । କୌଣସି ବିଶେଷ ଭୂମିକା ନଥିଲେ ହେଁ ଗଳ୍ପର ଲୋକପ୍ରିୟତା ଦୃଷ୍ଟିରୁ ଯେ ଅତ୍ୟନ୍ତ ସ୍ମରଣୀୟ ଚରିତ୍ର ।

**ଭଣ୍ଡାରୁଣୀ** - (ବିରେଇ ବିଶାଳ) କନୀ କମଳାର ପେଟଟା ବାହାରି ପଡ଼ିଥିବାର ଦେଖି ଇଏ ଆଉ ପାଞ୍ଚ ମହିଳାଙ୍କୁ କମଳିର ଚରିତ୍ର ସଂପର୍କରେ ସୂଚନା ଦେଇଛି ଓ କନ୍ୟା ସମ୍ଭବତଃ ପାଞ୍ଚମାସ ଗର୍ଭବତୀ ହୋଇଥାଇପାରେ ବୋଲି ମତ ପ୍ରକାଶ କରିଛି ।

**ଭଲଲୋକ** - (ମାଧ ମହାନ୍ତିଙ୍କ କନ୍ୟାସୁନା) ମହାନ୍ତି ଝିଅ ମାଳତୀ ପାଇଁ ଛନ୍ଦ ଜମିଦାର ବିନୋଦ ବିହାରୀ ଗଡାଘର ରାୟର ବିବାହ ପ୍ରସ୍ତାବ ଆଣିଥିବା ମଧ୍ୟସ୍ଥ । ମାଧ ମହାନ୍ତିଙ୍କ ନାମରେ ନାନା ମିଛ ବୟାନ କରି ବିଶ୍ୱାସ ଜନ୍ମାଇଛନ୍ତି । ମଠ ମହନ୍ତଙ୍କ ଷଡ଼ଯନ୍ତ୍ରର ସହଯୋଗୀ ।

**ଭାଗବତ ପତି** - (ଅଧର୍ମବିତ୍ତ) ବିଜେ ନରହରିପୁର ଶାସନର ଜଣେ ଶାସନୀ ବ୍ରାହ୍ମଣ । କୁବେର ସାହୁର ଶୋଷଣ ବିରୋଧରେ ଡକା ଯାଇଥିବା ବ୍ରାହ୍ମଣ ସଭାରେ ଉପସ୍ଥିତ ଥାଇ ସାହୁ ବିରୁଦ୍ଧରେ ମତାମତ ଦେଇଥିଲେ ।

**ଭାସ୍କର ଖଡ଼ିରତ୍ନ** - (ପ୍ରାୟଶ୍ଚିତ୍ତ) ସମସରପୁର ଜମିଦାରଙ୍କ ଗ୍ରହାଚାର୍ଯ୍ୟ । ଜେମାଙ୍କ ବିବାହପାଇଁ ଦିନ ଧାର୍ଯ୍ୟ କରିଥିଲେ ।

**ଭାସ୍କର ପଣ୍ଡିତ** - (ଲଛମା) ମରହଟ୍ଟା ସେନାପତି । ବାଲେଶ୍ୱର ବନ୍ଦରଠାରେ ଭାସ୍କର ପଣ୍ଡିତ ଡେରା ପକାଇଥିଲେ । ଆଖ ପାଖରେ ପ୍ରତିରୋଧକାରୀ ଖଣ୍ଡାୟତ ବା ମୋଗଲ ନଥିବାରୁ ସେ ଆଧିପତ୍ୟ ବିସ୍ତାର କରି ରହିଥିଲେ । ଫୁଲଓଆର ଯୁଦ୍ଧରେ ମୋଗଲ ବାହିନୀର ଆପଣା ପ୍ରତ୍ୟୁତ୍ପନ୍ନମତିତାରେ ରଣନୀତିର ପରିବର୍ତ୍ତନ କରି ଯଥେଷ୍ଟ କ୍ଷତି ଘଟାଇଥିଲେ । ଏହି ଯୁଦ୍ଧରେ ରାଇବଣିଆ ପାଇକଙ୍କ ବୀରତ୍ୱ ଓ ରଣକୌଶଳ ଯୋଗୁଁ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ ଓ ମାନଧାତାଙ୍କ ଉପରେ ପ୍ରତିହିଂସା ସାଧନପାଇଁ ଚେଷ୍ଟିତ ହୋଇଥିଲେ । ଏହି ଯୁଦ୍ଧ ଓ ତଦ୍‌ଜନିତ ଭାସ୍କରଙ୍କ ମାନସିକତା ଉପନ୍ୟାସର ଗତି ପରିବର୍ତ୍ତନରେ ଏକ ଗୁରୁତ୍ୱପୂର୍ଣ୍ଣ ସୂତ୍ର ବହନ କରିଥାଏ । ଭାସ୍କର ଚରିତ୍ରର ଏକ ବିଶେଷ ଗୁଣ, ଭାସ୍କର ଭୟଙ୍କର ଅର୍ଥପିଶାଚ, ଅର୍ଥ ତାଙ୍କର ସର୍ବସ୍ୱ ।

**ଭୀମ ପଇଡ଼ା** - (ପ୍ରାୟଶ୍ଚିତ୍ତ) ଜନୈକ ପାଇକ । ସଂକର୍ଷଣ ମହାନ୍ତିଙ୍କୁ ଡକାୟତମାନଙ୍କ ସଂପର୍କରେ କାଳ୍ପନିକ ବିବରଣୀ ଦେଇଛି ।

**ଭୀମ ସାହୁ** - (ଅଧର୍ମ ବିତ୍ତ) ଘର ମକ୍ରାମପୁର । ଯାହାଙ୍କ ଘରେ 'କୋବ୍ରା' ବୋଇହାକ କରିବାପାଇଁ ରହିଥିଲା । ୟାଙ୍କର ମୃତ୍ୟୁ ପରେ ମିଛ ପୋଷ୍ୟପୁତ୍ର ପ୍ରମାଣ ଦେଇ କୁବେର ସାହୁ ୟାଙ୍କ ସମ୍ପତ୍ତିର ଉତ୍ତରାଧିକାରୀ ହୋଇଛି । ଇଏ ଥିଲେ ତଣ୍ଟିଚିପା ଯକ୍ଷ । ନିଃସନ୍ତାନ ଥିବାରୁ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ ଓ ପରେ ସେହି ପୋଷ୍ୟପୁତ୍ର ମଦ, ଗଞ୍ଜେଇ ଖାଇ ମୃତ୍ୟୁବରଣ କରିଥିଲା ।

**ଭୀମ ସିଂହ** - (ମାମୁ) ଜଣେକ କନେଷ୍ଟବଳ । ରାଘବ ମହାନ୍ତିକୁ ମାଡ଼ଦେଇ ତାଠାରୁ କଥା ଆଦାୟ କରିଛି ।

**ଭୀମସେନ ତିହାଡ଼ି** - (ପ୍ରାୟଶ୍ଚିର) ଗୋବିନ୍ଦ ବିବାହର ବାଣ ଫୁଟାରୁ ସୃଷ୍ଟି ହୋଇଥିବା ଭୂମିକାର ଧାରଣାର କାରଣ ଅଗ୍ନିସଂଧାନ ଜନିତ ଆଲୋଚନାର ଜଣେକ ଅଂଶଗ୍ରହଣକାରୀ ।

**ଭୀମା** - (ମାଧ ମହାନ୍ତିଙ୍କ କନ୍ୟା ସୁନା) ମାଧ ମହାନ୍ତିଙ୍କ ପାଖଲୋକ ।

**ଭୀମ ଆଈ** - (କମଳା ପ୍ରସାଦ ଗୋରାପ) କମଳା ପ୍ରସାଦ ଗୋରାପର ମାଲିକ ରାମହରି ନାୟକଙ୍କ ଘରେ ଦାସୀ । କୋଡ଼ିଏ ଟଙ୍କାରେ ବେକର ସୁନାମାଳି ବନ୍ଧା ପକାଇ ସେହି ଟଙ୍କା କମଳା ପ୍ରସାଦ ଗୋରାପର ମାଝିକୁ 'ବଟମ୍' ରେ ଆଗୁଆ ଟଙ୍କା ଦେଇଥିଲା । ମାତ୍ର ଗୋରାପ ମଝି ଦରିଆରେ ବୁଡ଼ିଯିବାରୁ ମୂଳନାଶ ଗଲା ଓ ଏ ଆକୁଳ ହୋଇ ବିଳାପ କରିଥିଲା ।

**ଭୀମ ମା'** - (ମାମୁ) ଚାନ୍ଦମଣି ଓ ପ୍ରତାପଉଦିତ ମଲ୍ଲଙ୍କ ବିବାହ ପ୍ରସଙ୍ଗ ଚର୍ଚ୍ଚିତ ହେବାବେଳେ ଯେ କହିଛି ନିର୍ବନ୍ଧ ଦିନ ଢେର ଜଳପାନ ହେଲା । ପ୍ରାୟ ଦେଢ଼ଶହ ଲୋକ ଖାଇଲେ । ଲୋକ ଚରିତ୍ର ଦୃଷ୍ଟିରୁ ଚରିତ୍ରଟି ଆସିଛି ।

**ଭୀମା ମାଆ ଭଣ୍ଡାରୁଣୀ** - (ଛମାଣ ଆଠଗୁଣ୍ଠ) ଲୌକିକ ମାନସିକତାକୁ ପ୍ରକାଶ କରିବା ଉଦ୍ଦେଶ୍ୟରେ ଏଇ ଚରିତ୍ରଟି କଳ୍ପିତ । ବୁଢ଼ୀ ମଙ୍ଗଳା ଆସ୍ଥାନରେ ପୂଜା ସାମଗ୍ରୀମାନ ପଡ଼ିଥିବା ଦେଖି ସେ ମଙ୍ଗଳାଙ୍କୁ ଚାକ୍ଷ୍ୟସ କରିଥିବାର ପ୍ରମାଣ ଦେଇଛି । ''କାଲି ନିଶା ଭାଗ ରାତିରେ ବାହାରକୁ ଉଠିଥିଲି ଗୋହିରୀ ମଝିରୁ ଝୁଣା ଗନ୍ଧ ଆସିଲା, ଝମର ଝମର ଶୁଭିଲା । ଅନାଇଲି, ବାଘ, ଉପରେ ଠାକୁରାଣୀ ବିଜେ ହେଉଅଛନ୍ତି ।''

**ଭୀମା ସାମଲ** - (ମାମୁ) ଜଣେକ ଗୁହାରିଆ । ନାଜର ନଟବରଙ୍କୁ ଜଣାଇଥିଲା ତା' ଜମି ଜଣେକ ଶାମ ସାହୁକୁ ଶହେ ଟଙ୍କା ଲାଞ୍ଚ ଖାଇ ଦିଆଯାଇଛି । ନାଜର ତା'ର ପ୍ରତିକାର କରନ୍ତୁ । ମାତ୍ର ଏହାର ଗୁହାରି ବ୍ୟର୍ଥ ହୋଇଥିଲା ।

**ଭୀମେଇ ମିଶ୍ର** - (ବିରେଇ ବିଶାଳ) ପୁରୋହିତ । ବିରେଇ ତରଫରୁ କମଳୀ ସହ ବିରେଇର ବିବାହରେ ମଧ୍ୟସ୍ଥ ।

**ଭୋବନୀ ବାହିନୀପତି** - (ଛମାଣ ଆଠଗୁଣ୍ଠ) ବ୍ରାହ୍ମଣମାନଙ୍କୁ ନିତ୍ୟ ପ୍ରାତ୍ୟହିକ କାର୍ଯ୍ୟାବଳୀର ବର୍ଣ୍ଣନା କ୍ରମେ ଏହାଙ୍କର ଏକ ଉକ୍ତି ବିଶେଷ ଗୁରୁତ୍ୱ ରଖେ । 'ଆମ୍ଭର ଭୂମିକା କାହିଁ ଯେ ସନ୍ଧ୍ୟାରେ ଆଶୀର୍ବାଦ କରିବୁ ।' ଏହା ବ୍ୟଞ୍ଜିତ କରୁଛି ବ୍ରାହ୍ମଣମାନଙ୍କ.ଭୂସମ୍ପତ୍ତି ଶୂନ୍ୟତାକୁ ଓ ଆର୍ଥିକ ଦୁରାବସ୍ଥାକୁ ।

**ମକରା ବାରିକ** - (ପୁନର୍ମୂଷିକୋଭବ) ରାମା ବାରିକର ମାଉସୀ ପୁଅ ଭାଇ । ରାମା ପକ୍ଷର ଅନ୍ୟତମ ସାକ୍ଷୀ ।

**ମକ୍ରମ ବେହେରା** - (କମଳା ପ୍ରସାଦ ଗୋରାପ) କମଳା ପ୍ରସାଦ ଗୋରାପର ଖଲାସୀ । ମାଝି ସ୍ୱରୂପ ସହ ମିଶି ମାଲିକ ରାମହରି ନାୟକଙ୍କର ବାରହଜାର ଟଙ୍କା ଆତ୍ମସାତ୍ କରିଛି ଓ କାଳ୍ପନିକ ଜାହାଜ ବୁଡି କାହାଣୀର ନୀରବ ସମର୍ଥନ କରିଛି ।

ମକ୍ରା - (ପେଟେଣ୍ଟ ମେଡ଼ିସିନ) ଚନ୍ଦ୍ରମଣି ପଟ୍ଟନାୟକଙ୍କ ଘର ଚାକର । ଚନ୍ଦ୍ରମଣି ଉତ୍ସମାନତାରା ବେଶ୍ୟା ପାଖକୁ ଯିବାବେଳେ ଏହାକୁ ମାମୁ ଘର ଯିବାକୁ ଛୁଟି, ଚାରି ଟଙ୍କା ଖରଚ ପାଇଁ ଦେଇ, ଗୋଟିଏ ଅଙ୍ଗା କିଣି ଦେବାର ପ୍ରତିଶ୍ରୁତି ଦେଇ ନିଜ ସ୍ଥାନରେ କମ୍ବଳ ଘୋଡ଼ି ଶୋଇବାକୁ ରାଜି କରାଇ ଥିଲେ । ସାଆନ୍ତାଣୀ ଏହାକୁ ବାବୁ ଭାବି ମୁହଁ ପୋଛି ଦେବାବେଳେ ମୁଛ ନ ଥିବାରୁ ସନ୍ଦେହ କରି କମ୍ବଳ ଉଠାଇ ବାବୁଙ୍କ ସ୍ଥାନରେ ଏହାକୁ ଆବିଷ୍କାର କରିଛନ୍ତି । ସେ ମଧ୍ୟ ଏହାକୁ ଚାରି ଟଙ୍କା ବାଟ ଖରଚ ଓ ଖଜା, ଚଣାପାଇଁ ଦେଇ ଗୋଟିଏ ମାଣିଆବନ୍ଧି ଜଥା ଦେବାର ପ୍ରତିଶ୍ରୁତି ଦେଇ ତାକୁ ପଠାଇ ନିଜେ ତା ସ୍ଥାନରେ କମ୍ବଳ ଘୋଡ଼ି ହୋଇ ଶୋଇରହି ଚନ୍ଦ୍ରମଣିଙ୍କୁ ହାତେ ହାତେ ଧରି ପାରିଥିଲେ । ଉଭୟଙ୍କ ଲକ୍ଷ୍ୟ ସାଧନ ପାଇଁ ଯେ ଏକ ସହାୟକ ଚରିତ୍ର ଭାବେ ଆସିଛି ।

ମକ୍ରା ମଳିକ - (ସଭ୍ୟଜମିଦାର) ଆସାମ ଚା' ବଗିଚାର କୁଲି, ବବୁର୍ଚ୍ଚି କାମକରି ପଦୋନ୍ନତିରେ ଖାନସମା (ଭଣ୍ଡାରରକ୍ଷକ) । ଚା'ବଗିଚାରେ ତିରିଶ, ଚାଳିଶବର୍ଷ ଧରି କୁଲିଗିରି । ଗ୍ରାମ, ଘର, ଜାତିକୁଳ ଅଜ୍ଞାତ । ଜନୈକା କୁଲିଆଣୀ ସହ ବିବାହ । ନାନା ପୂଜା,ମାନସିକପରେ ଦରବୁଢ଼ା ବୟସରେ କନ୍ୟାଲାଭ । କଲିକତା ଆଣି ଝିଅର ବିବାହରେ ଉଦ୍‌ଯୋଗ କରି ରାଜୀବଲୋଚନ ସହ ବିବାହ ଦେଇଥିଲେ । ଚରିତ୍ରଟି ସଂପର୍କରେ ବିଶେଷତଥ୍ୟ ପ୍ରଦତ୍ତ ହୋଇନାହିଁ ବା ତାର ଅବକାଶ ମଧ ନାହିଁ ।

ମକୁ ବିଶାଳ - (ବିରେଇ ବିଶାଳ) ଘର ମୁକୁନ୍ଦପୁର ଗାଁ । ଗାଁରେ ଘର ପରିକା ଘର । ଏ ବିରେଇ ବିଶାଳର ବାପା । ସନ୍ନିପାତ ରୋଗରେ ମଲାବେଳକୁ ବିରେଇ ପାଞ୍ଚ ବରଷର ପିଲା । ଘରେ ଚାରିଟା ମରେଇରେ ଚାଳିଶ ପଚାଶ ଭରଣ ଧାନ । କରଜ ଦେଇଥିଲେ ପଚାଶ ଭରଣ ସରିକି ଧାନ ।

ମକ୍ରା ସାହୁ - (ମାମୁ) ଜନୈକ ଗୁହାରିଆ । ନାଜରଂକୁ ତାର ଦୁଃଖ ଗୁହାରି ଥିଲା ନ୍ୟାୟ ଆଶାରେ । ମାତ୍ର ତାହା ସଫଳ ହୋଇନଥିଲା ।

ମର୍କଟ ଦାସ - (ଧୂଳିଆବାବା) ହନୁମାନ ଦାସଂକ ସ୍ୱର୍ଗ ଗମନର ଇଚ୍ଛା ଯୋଗୁଁ ଅଯୋଧାର ହନୁମାନଗାଦିରୁ ଦେଗାଁର ହନୁମାନଜୀଙ୍କ ମହନ୍ତ ହେବାକୁ ଇଏ ଆସିଥିଲେ । ଭରା ମହାନଦୀକୁ ବାଘଛାଲରେ ଅଧିକାରୀ, ଟହଲିଆ, ସୁଆର, ଛତିଆ ଦୁଇ ଜଣ ବାହିଆ ଆଦିଙ୍କୁ ବସାଇ ପାରିହୋଇ ପାରନ୍ତି । ଗାଦିରେ ଥିଲେ ଦେଢ଼ ହଜାର ବର୍ଷ ।

ମଦନ ମୋହନ ଦାସ - (ବାଲେଶ୍ୱରୀ ରାହାଜାନୀ) ବାଲେଶ୍ୱରବାସୀ ମହାଜନ । ବସ୍ତାଥାନା ଇଲାକାରେ ଏହାଙ୍କ ଗୋଟିଏ ତାଲୁକର ନାଟବନ୍ଦିଖଜଣା ପ୍ରାୟବାରଶତ ଟଂକା କଚେରିଘରେ ଜମାଥିଲା । ଡକାୟତମାନେ ତାହା ଘେନି ଯାଇଥିଲେ । ଡକାୟତମାନଂକ ଅପ୍ରତିରୋଧ ଗତି ଓ ଦୁଃସାହସର ଉଦାହରଣଭାବେ ଏହାଙ୍କ ଉଲ୍ଲେଖ ରହିଚି ।

**ମଦନମୋହନ ପଟ୍ଟନାୟକ** - (ଗାରୁଡ଼ିମନ୍ତ୍ର) ବଡ଼ନଇ ପ୍ରଗଣାର ଶାଳପାଳ ତାଲୁକର ଜମିଦାର ଗୋଲାପଲୋଚନ ପଟ୍ଟନାୟକଂକ ଏକମାତ୍ର ସନ୍ତାନ । କଟକ ଚୌଧୁରୀବଜାର ବସାରେ ରହି କଟକ କଲେଜରେ ଏଫ୍.ଏ. ପଢୁଥିଲା । ବାପାଙ୍କ ଆଜ୍ଞାଧୀନ ପୁତ୍ର । ଆଧୁନିକ, ଶିକ୍ଷିତ । ସ୍ତ୍ରୀ ଶିକ୍ଷାର ପକ୍ଷପାତୀ । ସଂସ୍କାର ମନୋଭାବପନ୍ନ । ସ୍ତ୍ରୀର ଲଜ୍ଜା ଭାଙ୍ଗିବାକୁ ତାକୁ ନିଜ ଇଚ୍ଛାନୁଯାୟୀ ଶିକ୍ଷିତା କରାଇବାକୁ ସର୍ପାଘାତର ନାଟକ ରଚନା କରିଥିଲେ ଓ ଆପଣା ଲକ୍ଷ୍ୟଭେଦରେ ସଫଳ ହୋଇଥିଲେ । ଆଦର୍ଶ ଓ ସଂସ୍କାରକାମୀ ଶିକ୍ଷିତବ୍ୟକ୍ତି ଭାବେ ଏହାଙ୍କ ଚିତ୍ରଣ ଉତ୍ସାହପ୍ରଦ ।

**ମଦନା ମହାକୁଡ଼** - (ପ୍ରାୟଶ୍ଚିତ୍ତ) ସଂକର୍ଷଣ ମହାନ୍ତିଙ୍କ ଉଆସର ସେବାକାରୀ । ଜାତିରେ ଗୋପାଳ ।

**ମରୁଆ** - (ପ୍ରାୟଶ୍ଚିତ୍ତ) ଇନ୍ଦୁମତୀର ଖାସ ପୋଇଲୀ । ଇନ୍ଦୁଠାରୁ ପାଞ୍ଚସାତ ବର୍ଷ ବଡ଼ । ପୂର୍ଣ୍ଣଯୁବତୀ । ଉଆସରେ ଲାଳିତପାଳିତ । ଇନ୍ଦୁମତୀର ସାନ୍ନିଧ୍ୟରେ ରହି ସେ ମଧ୍ୟ ଚିତ୍ରାଙ୍କନ, ଲେଖାପଢ଼ା କିଛି କିଛି ଶିଖିଥିଲା । ଏହାର ବାପା-ଭୀମସେଣ ମହଲ (ମଲ୍ଲ) । ସମସରପୁରର ଅନ୍ୟତମ ମକଦ୍ଦମ । ବିଷୟ ସଂପତ୍ତି ଯୁକ୍ତ । ଏକମାତ୍ର ଝିଅ ମରୁଆ, ଯିଏ ମାସକରୁ ମା' ଛେଉଣ୍ଡ । ବାପା ଆଠଦିନ ଜ୍ୱରଭୋଗୀ ଗତାୟୁ ହେଲେ । ତାଂକ ସଂପତ୍ତି ବିକି ଜମିଦାର ମରୁଆ ନାମରେ ସରକାରଙ୍କଠାରେ ଜମା କରିଦେଇଥିଲେ । ବଢ଼ିବଢ଼ି ତାହାପ୍ରାୟ ପଚିଶହଜାର ଟଂକା ହୋଇଥିଲା । ଇନ୍ଦୁର ମୃତ୍ୟୁପରେ ସେ ମଧ୍ୟ ଦୋଷୀ ବୋଲି ନିଜକୁ ଭାବି ଆତ୍ମହତ୍ୟା ଚେଷ୍ଟାକରି ବିଫଳ ହୋଇଥିଲା । ଏହାର ବିବାହପାଇଁ ଗୋବିନ୍ଦଙ୍କ ପ୍ରଚେଷ୍ଟା ବ୍ୟର୍ଥ ହୋଇଥିଲା । 'ଅଯତ୍ନକୁନ୍ତଳା, କଷାୟବସନ ପରିହିତା, ତପସ୍ୱିନୀ' ପ୍ରାୟ ସେ ଜୀବନଯାପନ କରିଥିଲା ।

**ମହାଦେବୀ** - (ଲଛମା) ମାନଧାତାଙ୍କ ପତ୍ନୀ । ଦୟାମୟୀ । ବନ୍ଧ୍ୟା ଉଦ୍ଭିଦ ଓ ପ୍ରାଣୀମାନଂକ ପ୍ରତି ଦୟାଶୀଳ । ଏହାଙ୍କ ଯତ୍ନରେ ଲଛମା ରାଇବଣିଆ ଦୁର୍ଗରେ ରହିଥିଲା ରାଇବଣିଆ ଯୁଦ୍ଧରେ ମାନଧାତାଙ୍କ ମୃତ୍ୟୁର ଭୁଲ ସମ୍ବାଦ ପାଇ ଓ ମରହଟ୍ଟାମାନେ ଦୁର୍ଗକୁ ପଶିବା ଦେଖି, "ମୁହୂର୍ତ୍ତ ମଧ୍ୟରେ ତାଙ୍କ ମନରେ ଉଦୟ ହେଲା ଆଉ କି ସକାଶେ ଜୀବନ ? ଜୀବନେଶ୍ୱର ଯାଇ ଅଛନ୍ତି, ଅବଶେଷରେ ଧର୍ମ ନଷ୍ଟ ହେବ ? ଗଡ଼ଚଣ୍ଡୀ ଦେବୀଙ୍କୁ ପ୍ରଣିପାତ ପୂର୍ବକ ଦେବୀଙ୍କ ଧଣ୍ଟାମାଳ ଗଳାରେ ଲମ୍ବାଇ ବେଣ୍ଟ ପୋଖରୀରେ ପ୍ରାଣ ତ୍ୟାଗ କଲେ । ଆକ୍ରମଣ ପୂର୍ବରୁ ମଙ୍ଗଳମୂର୍ତ୍ତୀ ମହାଦେବୀ ଲଛମାକୁ ଦୁର୍ଗ ବାହାରକୁ ପଠାଇଦେବାକୁ ଭୁଲିନଥିଲେ । ମହାଦେବୀ ଚରିତ୍ରଟିର ମାତୃକଳ୍ପ ଭାବଟି ଅଧିକ ପ୍ରସ୍ଫୁଟିତ ।

**ମହାପାତ୍ରେ ତ୍ରିଲୋଚନ ଡିହାଡ଼ି** - (ପ୍ରାୟଶ୍ଚିତ୍ତ) ବୈଷ୍ଣବଚରଣଙ୍କ ପୁରୋହିତ । ଗୋବିନ୍ଦପାଇଁ ଶନିଦଶା ଶାନ୍ତିପାଇଁ ଗ୍ରହ ଉଚ୍ଚାରିକା ଯୋଗର ଭାବ ତାଙ୍କ ଘରପୋଥିରେ ଉଲ୍ଲେଖ ଥିବା ପାଟଯୋଷୀଙ୍କୁ କହିଚନ୍ତି ।

**ମହାବୀର ଦାସ -** (ମୌନାମୌନୀ) ଖଣ୍ଡଗିରି ହାତୀଗୁମ୍ଫା ସମ୍ମୁଖରେ ଧୂନୀଜାଳି ବସୁଥିବା ଭଣ୍ଡ ମହନ୍ତ । ତାଙ୍କର ଦେବତା ମହାବୀର । କଥିତ ଅଛି ସେ ଧୂନିରୁ ନିତି ସୁନାରୁପା କାଢ଼ି ବିକନ୍ତି ଓ ସେ ଅର୍ଥରେ ଦେବସେବା କରନ୍ତି । ନିୟମଥିଲା ପ୍ରତିଦିନ ବାହାରୁଥିବା ସୁନାରୂପା ପ୍ରତିଦିନ ଖର୍ଚ୍ଚ ନହେଲେ ଧାତୁ ବାହାରିବା ବନ୍ଦ ହୋଇଯିବ । ଇଏ ଗଙ୍ଗାଜଳ ସେବା ନାଁରେ ମଦ୍ୟପାନ କରନ୍ତି ଓ ପ୍ରଚୁର ଗଞ୍ଜେଇ ମଧ ସେବନ କରନ୍ତି । ବ୍ୟାୟାମ ସାଧିତ ପ୍ରାୟ ବଳିଷ୍ଠ ଦେହ । ମାଂସପେଶୀ ଦୃଢ଼ ବଳୀବର୍ଦ୍ଧବତ୍ । ମସ୍ତକରେ ଦୀର୍ଘଜଟା ବେଣୀବଦ୍ଧ । ଶ୍ମଶ୍ରୁ ଓ ନିଶଯୁକ୍ତ । ବିଭୂତି ମଣ୍ଡିତ ଦେହ, ବୟସ ପ୍ରାୟ ପଚାଶ । ତାଂକ ଦଳର ସାଧୁ ସଂଖ୍ୟା ପଚାଶ । ସାଧୁମାନେ ରୁକ୍ଷଦର୍ଶନ, କର୍କଶ ଓ କେବଳ ଜଟାଜୁଟ-ଶଶ୍ମ ବିହୀନ । ଭାଷା ବଙ୍ଗ ହୀନ୍ଦୀର କଦର୍ଯ୍ୟ ବିମିଶ୍ରିତ ଭାଷା । ନିକଟସ୍ଥ ଛଦ୍ମ ମୌନାମୌନୀ ବାବାଜୀଙ୍କ ଦ୍ରବ୍ୟାଦି ସଂଗ୍ରହ କରି ଦିଅନ୍ତି । ମହନ୍ତ ବିଭୂତି ଦେଇ ଲୋକଙ୍କ ପୀଡ଼ା ଉପଶମ କରନ୍ତି । ଗଳ୍ପର ପରିଣତିରେ ମହନ୍ତ ଯେ ଭଣ୍ଡ ଓ କଲିକତାର ଡକାଏତ ସର୍ଦ୍ଦାର ଜଗା ଗୁଆଲା ଏକଥା ଜଣାପଡ଼ିଚି ଓ ସେ କାରା ଦଣ୍ଡ ପାଇଚନ୍ତି ।

**ମାଗୁଣି ମହାନ୍ତି -** (କାଳିକା ପ୍ରସାଦ ଗୋରାପ) ଗୁମାସ୍ତା । ତୁର୍କବିରୋଧୀ ସଭାରେ ଉପସ୍ଥିତ ଥାଇ ଏହାର କାର୍ଯ୍ୟକ୍ରମ ଲେଖି ରଖିଥିଲେ ।

**ମଙ୍ଗଳପୁର ତାଲୁକର ଜମିଦାରାଣୀ -** (ଗାରୁଡ଼ିମନ୍ତ୍ର) ମଦନମୋହନର ଶାଶୁ, ମୋହିନୀର ମା । ନିଜ ଝିଅର ସଣ୍ଣା ସଂପର୍କରେ ଅତ୍ୟନ୍ତ ସଚେତନ । ପଦୀଦାସୀକୁ ବାରମ୍ବାର ସେ ତାଗିଦକରି ଦେଇଥିଲେ, 'ଝିଅର ଢଙ୍ଗ ଢାଙ୍ଗ, ଲାଜସରମ କଥାରେ ଯେମନ୍ତ କେହି ତୁଣ୍ଡ ନଫିଟାଏ, ଆମ ବଂଶକୁ ନିନ୍ଦା ବୋଲଣା ନଆସେ ।'

**ମଙ୍ଗଳା -** (ମାମୁ) ନାଜର ନଟବରଙ୍କ ଶାଶୁ । ଯେ ପୁତ୍ର ରାଘୋ ଗତ ପ୍ରାଣ । ଅତ୍ୟନ୍ତ ସରଳ ଓ ଗ୍ରାମ୍ୟ ସ୍ତ୍ରୀ । ନାଜରଙ୍କ ଗୃହର ଧନ, ଜନ, କ୍ଷମତାର ବିପୁଳତାରେ ସେ ସଂପୂର୍ଣ୍ଣ ଅଭିଭୂତା । ରାଘୋର ସୁଖ ସ୍ୱାଛନ୍ଦ୍ୟ, ଭଲପାଇଁ ସେ ବଡ଼ ଆଗ୍ରହୀ । ସେ କୌଣସି ମନ୍ଦକାମ କରିପାରେ ଏହା ତାଂକର କଳ୍ପନାର ବାହାରେ । ଏହି ଚରିତ୍ରର ଚିତ୍ରଣରେ ଏହାର ବ୍ୟକ୍ତିତ୍ୱର ମାତୃରୂପଟି ପ୍ରତି ଗୁରୁତ୍ୱ ଆରୋପିତ ।

**ମରୁଆ -** (ଛମାଣ ଆଠଗୁଣ୍ଠ) ପିତା-ଲକ୍ଷ୍ମଣ ତିହାଡ଼ି, ଜାତିରେ ବ୍ରାହ୍ମଣ । ସ୍ୱାମୀ-ଟଗନାଥ (ଜଗନ୍ନାଥ ?) ତିହାଡ଼ି । ପୁରୀ ବ୍ରାହ୍ମଣ ଶାସନରେ ଘର । ସାତ ବରଷରେ ବିବାହ ବେଳେ ତିନିକୋଡ଼ି ଚାରିବରଷ ବୟସର ସ୍ୱାମୀସହ ବିବାହ । ଶ୍ୱାସଚ୍ଛେମାରୀରେ ସ୍ୱାମୀ ମରିବାପରେ ମରୁଆ ବାପଘରକୁ ଫେରିଆସିଥିଲା ଓ ପାଞ୍ଚସାତ ବରଷ ରହିଥିଲା । ସେଇ ଗ୍ରାମରେ ଜନୈକ ଲଳିତା ଦାସ ବାବାଜୀ ରହୁଥିଲେ । ତାଂକପାଖକୁ ମରୁଆ ଚୈତନ୍ୟ ଚରିତାମୃତ ଶୁଣିଯିବାରୁ ଘରେ କଳିହେଲା । ବୃନ୍ଦାବନ ଯିବାପାଇଁ ଲଳିତା ଦାସ ବାବାଜୀଂକ ସହ ସେ ଘରଛାଡ଼ି କଟକ ତେଲେଙ୍ଗା ବଜାରରେ ଥିଲା । ମଙ୍ଗରାଜ ମାମଲା କରିଯିବାକୁ କଟକ ଗଲାବେଳେ ତାକୁ ନେଇଆସିଥିଲେ । ତା'ପରଠୁ ସେ ରହିଥିଲେ ଦୀର୍ଘ ଦଶବର୍ଷ ମଙ୍ଗରାଜଙ୍କ ଘରେ ପୋଇଲୀ

ହୋଇ । ସେ ଥିଲା ମଙ୍ଗରାଜଙ୍କ ସାନବୋହୂର ଅତ୍ୟନ୍ତପ୍ରିୟ । ଉପନ୍ୟାସର ପରିଣତି ବେଳେ ଲଳିତାଦାସ ବାବାଜୀଂକ ସହ ଅନ୍ତର୍ଦ୍ଧାନ ହେବାବେଳେ ସାନବୋହୂର ହାତବାକ୍ସର ଗହଣା ଓ ନଗଦ ଅର୍ଥ ମଧ ପତ୍ତା ମିଳିନଥିଲା ।

**ମାଧ ପାଣି** - (ଅଧର୍ମବିତ୍ତ) ବିଜେ ନରହରିପୁର ଶାସନର ଶାସନୀ ବ୍ରାହ୍ମଣ । କୁବେର ସାହୁର ଶୋଷଣ ବିରୋଧରେ ଡକାଯାଇଥିବା ବ୍ରାହ୍ମଣସଭାରେ ଉପସ୍ଥିତ ଥାଇ ସାହୁ ବିରୁଦ୍ଧରେ ମତାମତ ଦେଇଥିଲେ ।

**ମାଧବୀ** - (ମାଧ ମହାନ୍ତିଙ୍କ କନ୍ୟାସୁନା) ମାଧ ମହାନ୍ତିଙ୍କ ବଡ ଝିଅ । ମା ମରିବାର ଚାରିମାସ ଆଗରୁ କୃପଣ ବାପା ସାତଶହ ଟଂକା 'କନ୍ୟାସୁନା' ନେଇ ତାକୁ ଷାଠିଏ ବର୍ଷର ବୁଢ଼ା ସହ ସାଢ଼େ ଆଠବର୍ଷ ବୟସରେ ବାହା ଦେଇଥିଲେ । ଇଏ ଏଗାର ବର୍ଷ ବୟସରୁ ବିଧବା । ବିବାହ ପରେ ଆଉ କେବେବି କୃପଣବାପା ତାକୁ ଘରକୁ ଆଣିନି ।

**ମାଧ ମହାନ୍ତି** - (ମାଧ ମହାନ୍ତିଙ୍କ କନ୍ୟାସୁନା) ମୁଖ୍ୟ ପୁରୁଷ ଚରିତ୍ର । ଘର ମଧୁପୁର । ଜାତି ବଳରାମ ଗୋତ୍ରୀ । ବୟସ ସତୁରୀ । ପନ୍ଦରବର୍ଷର ଝିଅ ମାଳତୀ । ମୃତଦାର । ମାଳତୀର ବିବାହ ଲାଗି ସାତଶହ 'କନ୍ୟାସୁନା' ଚାହିଁଛି । ଅତିଶୟ କୃପଣ ଓ ଲୋଭୀ । ବଡ଼ଝିଅକୁ ଆଠବର୍ଷ ବୟସରୁ ବିବାହ ଦେଇ ସାତଶହ ଟଂକା ନେଇଥିଲା ଓ ସେ କନ୍ୟା ଏଗାର ବର୍ଷ ବୟସରୁ ବିଧବା । ଖର୍ଚ୍ଚ ହେବା ଭୟରେ ବିବାହପରେ ସେ ଝିଅକୁ ନିଜ ଘରକୁ ଆଣିନାହିଁ ବିବାହ ବଜାରରେ ମାଳତୀର ଭାଉ ବଢ଼ାଇବା ଉଦ୍ଦେଶ୍ୟରେ ତାକୁ କେବଳ ମୁହଁରେ ହଳଦୀ ଲଗାଇବା ଖର୍ଚ୍ଚ ଦିଏ । ମଠସେବକ ବିନୋଦିଆକୁ ଜମିଦାର ମନେକରି ତା' ସହ ମାଳତୀର ବିବାହ ପ୍ରସ୍ତାବରେ ରାଜି ହୋଇଛନ୍ତି । ସାତଶହ ଟଂକା 'କନ୍ୟାସୁନା' ଓ ତିନିଶହ ଟଂକା 'ବିଭାଲଗୁଡି' - ଏଇପରି ଟଂକା ଆଗୁଆ ମାଗି ନେଇଛି । ଝିଅର ବିବାହପାଇଁ ତେଲ, ହଳଦୀ, ବାହାଲୁଗା ଇତ୍ୟାଦି କିଣିବାକୁ କୁଣ୍ଠିତ ଓ ଜାତିଭାଇକୁ ବିବାହଭୋଜି ଦେବାରୁ ବିରତ ହୋଇଛନ୍ତି । ଶେଷରେ ଗାଁଲୋକ ତଥା ମଠ ମହନ୍ତଙ୍କ ଚକ୍ରାନ୍ତରେ ମାଳତୀର ବିନୋଦିଆ ସହ ବିବାହ ହୋଇ ଯାଇଥିଲା ଓ କନ୍ୟାସୁନା ପାଇନପାରି ମହନ୍ତଙ୍କଠାରେ ଫେରାଦୀ ହୋଇ ନିଷ୍ଫଳ ହୋଇଛନ୍ତି । ଗାଁବାଲା, ସାଇବାଲା ଦ୍ୱାରା ଉପହସିତ ହୋଇଛନ୍ତି । ପିଲାଏ ତାଳିମାରି ଗାଁରେ ଗୀତ ଗାଇଛନ୍ତି ।

'କନ୍ୟାସୁନାର ବଡ଼ ମଜା
ମହାନ୍ତି ଖାଇବେ ନବାବ ଖଜା ।'

ଶେଷରେ ରାଗରେ ଘରେ ଦୁଆର ବନ୍ଦକରି ସେ ପଡ଼ିରହିଲା ଓ ମରିଗଲା । ଆଗରୁ ଫାଟି ଯାଇଥିବା ମୁଣ୍ଡରେ ପୋକ ହୋଇ ଯାଇଥିବାର ଦେଖି ଗାଁଲୋକେ ଏହାର ଶାସ୍ତ୍ରୀୟ କାରଣ ଶୁଣନ୍ତି ଏପରି -

"ବୁଢ଼ା ବରେ ଝିଅ ବିକେଯେ ଲୋକ
ସେଲୋକ ମୁଣ୍ଡରେ ପଡ଼ଇ ପୋକ ।"

ଅତିଦୟନୀୟ ଭାବେ ଠୁଳକରିଥିବା ସଂପତ୍ତିକୁ ପଛରେ ଛାଡ଼ି ମୃତ୍ୟୁବରଣ କରିଛି କୃପଣ ମହାନ୍ତି ।

**ମାଣିକ ଭଣ୍ଡାରୁଣୀ** - (ଛମାଣ ଆଠଗୁଣ୍ଠ) ବାଘସିଂହ ପରିବାରରେ ଥାଏ । ଗ୍ରାମରେ ସମସ୍ତେ ଏହାକୁ ଡରି ରହିଥାଆନ୍ତି । 'ଏବୁଦ୍ଧିରେ, ମାମଲତରେ, ଗୁଣରେ ଅନେକ ପୁରୁଷର କାନକାଟି ଛାଡ଼ିଦେଇପାରେ ।' ଅପରକୁ ପରାମର୍ଶଦେବା ସହ ପିଲାଙ୍କୁ ଦୃଷ୍ଟିହେଲେ ଫୁଙ୍କିବା କିମ୍ବା ପଥ୍ୟାଦିକାମ, ସବୁଥିରେ ପାରଙ୍ଗମ । କଅଁଳେଇ ଦି'ପଦ କହିଦେଲେ ବିପଦଆପଦକୁ ଠିଆଡ, କଳିଆ କରିବାକୁ ମଜବୁତ । ବାହାପୁଆଣିରେ ସେ ନହେଲେ ନଚଳେ । ସର୍ବକାମକୁ ସେ ସମର୍ଥ, ଏପରିକି ସାଆନ୍ତାଣୀମାନଙ୍କୁ ବିବିଧ କାହାଣୀ କହିବାରେ ସେ ଅନନ୍ୟା । ସେଇଥିଲାଗି ଗାଁଟାସାରା ତାର ଆଦର । ଟାଙ୍ଗୀ ମାଉସୀ ଯିବାପରେ ମାଣିକହିଁ ପ୍ରଥମେ ତାଂକର ସମାଲୋଚନା କରିଥିଲା ।

**ମାରକଣ୍ଡିଆ** - (ଛମାଣ ଆଠଗୁଣ୍ଠ) ପାଞ୍ଚବର୍ଷର ପିଲା । ଯଶୋଦା ଅସୁରଦୀଘିରେ ଦାନ୍ତ ଘଷିବା ବେଳେ ସେ ପାଣିରେ ନାଚିକୁଦିବାରୁ ଯଶୋଦା ଦେହରେ ପାଣିଛିଟା ପଡ଼ିଛି ଓ ସେ ଗାଳି ଦେଇଛି । ମାରକଣ୍ଡିଆ ମା ସବୁ ଗାଳିଲାଗିଚି ମାତ୍ର ପରାସ୍ତ ହୋଇ ପୁଅକୁ ଚାପୁଡ଼େ ମାରି ତା ହାତ ଧରି ଟାଣି ଟାଣି ଦୂରକୁ ନେଇଯାଇଛି । ଫକୀରମୋହନ ନାନାଭାବେ ବିଶ୍ଳେଷଣ କରି ମାରକଣ୍ଡିଆର ଯେ ସବୁଦୋଷ ନିରୂପଣ କରିଛନ୍ତି' ପରୋକ୍ଷରେ ଘାଟର ଅସ୍ୱାସ୍ଥ୍ୟକର ଜଳ ଓ ତା'ର କାରଣ ସଂପର୍କର ତଦ୍ୱାରା ଇଙ୍ଗିତ କରିଛନ୍ତି ।

**ମାରକଣ୍ଡିଆ ମା** - (ଛ'ମାଣ ଆଠଗୁଣ୍ଠ) ଅସୁରଦୀଘି ପ୍ରସଙ୍ଗରେ ଆପଣା ପାଞ୍ଚବରଷିଆ ପୁଅ ସପକ୍ଷରେ ଏ ଚରିତ୍ରଟି ଯଶୋଦାକୁ ଗାଳି ଦେଇଥିଲା । ମାତ୍ର ପରାସ୍ତ ହୋଇ ପୁଅକୁ ନେଇ ଫେରି ଯାଇଥିଲା ।

**ମାଳତୀ** - (ମାଧ ମହାନ୍ତିଙ୍କ କନ୍ୟାସୁନା) ମାଧ ମହାନ୍ତିଙ୍କ ସାନଝିଅ । ବୟସ ପନ୍ଦର । ମାତୃ ବିୟୋଗ ହେତୁ ସାତବର୍ଷ ବୟସରୁ ଘରର ରଂଧାବଢ଼ା କାମ ପାଇଟି କରି ଆସିଛି । ରୂପବତୀ ଓ ଗୁଣବତୀ; ଗୋବରଗାଡିଆରେ ପଦ୍ମତୁଲ୍ୟ, ଅତିଶୟ କୃପଣ ବାପାଦ୍ୱାରା ସର୍ବଦା ନିଗୃହୀତ । କଷ୍ଟ-ଯାପିତ ଏକାକୀ ଜୀବନ ହେତୁ ଅତିଶୟ ଦୁଃଖିନୀ । ଗାଁର ପଦୀ ଭଣ୍ଡାରୁଣୀର ଚେଷ୍ଟାରେ ମଠର ଗନ୍ତାଘର ଚାକର ବିନୋଦିଆ ଓରଫ୍ ଛଦ୍ମ ଜମିଦାର ଶ୍ରୀ ଶ୍ରୀ ବିନୋଦବିହାରୀ ଗନ୍ତାଘର ରାୟକୁ ବିବାହ କରିଥିଲା । ଯାର ବିବାହରେ ପିତା ମାଧ ମହାନ୍ତି କନ୍ୟାସୁନା ପାଇବାରୁ ବଞ୍ଚିତ ହୋଇ ଥିବାରୁ ଯା' ଉପରେ କ୍ଷୁର୍ଣ୍ଣ ହୋଇ ଘରଦୁଆର କିଳି ପଡ଼ିରହି ମୃତ୍ୟୁବରଣ କରିଥିଲା ।

**ମୀରକାଶୀମ୍** - (ଲଛମା) କେନ୍ଦୁଝରର ସୋସୋ ଗ୍ରାମରେ ଅସ୍ଥାୟୀ ବସତି ସ୍ଥାପନ କରିଥିବା ମୋଗଲ ଫଉଜଦାର । ଇଏ ଭାସ୍କର ପଣ୍ଡିତଙ୍କ ଭୟରେ ବାଲେଶ୍ୱରରୁ ପଳାଇ କେନ୍ଦୁଝରରେ ଲୁଚି ରହି ମୁର୍ଶିଦାବାଦକୁ ସମ୍ବାଦ ପଠାଇଥିଲେ । ନାଗାମହନ୍ତ ବେଶରେ ସମ୍‌ସେର ଖାଁ ଆସି ମୁର୍ଶିଦାବାଦ ଦରବାରର ଖବର ଏହାଙ୍କୁ ଦେଇଥିଲେ ।

**ମୀରଜାଫର** - (ଲଛମା) ଆଲିବର୍ଦ୍ଦି ଖାଁଙ୍କ ବିଶ୍ୱସ୍ତ ସେନାପତି । ହଳଦୀପଦା, ଫୁଲଓ୍ୱାରର ଯୁଦ୍ଧରେ ପରାଜିତ ହୋଇଥିଲେ ହେଁ ଜଣେ ପ୍ରକୃତ ବୀର ପରି ଆତ୍ମବିଶ୍ୱାସ ଓ ନିଷ୍ଠା ହରାଇ ନଥିଲେ ।

**ମୀରହବିବ** (ଲଛମା) ସୁବାଦାର ଆଲିବର୍ଦ୍ଧିଖାଁଙ୍କ ସେନାପତି । ମେଦିନୀ ପୁରରେ ମରହଟ୍ଟାମାନଙ୍କୁ ଆଗୁଳି ବସିଥିଲେ । ମାତ୍ର ସେ ବିଶ୍ୱାସଘାତକତା କରିଥିଲେ । ଏହାଙ୍କ ଜନ୍ମ ପାରସ୍ୟରେ । ସ୍ୱକୀୟ ପ୍ରତିଭାବଳରେ ପିଆଦାରୁ ଜମାଦାର, ହାବିଲଦାର, ମନସବଦାର ହୋଇ ବେହାର ଶାସନକର୍ତ୍ତା ପଦରେ ନିଯୁକ୍ତ ଥିଲେ । ଏହାଙ୍କ ଦୋଷ ମଧ୍ୟରେ-ଯେ ଭୟଂକର କ୍ରୋଧୀ, କ୍ଷମାଗୁଣ ବର୍ଜିତ । ହିଂସାପରାୟଣ । ନବାବଙ୍କ ଅନ୍ୟ ପାରିଷଦଗଣ ସିଆ ଓ ଆଭିଜାତ୍ୟ ବର୍ଗରେ । ମୀରହବିବ ଥିଲେ ସୁନ୍ନୀ ଓ ଆଭିଜାତହୀନ । ଦରବାରରେ 'କିଞ୍ଚିତ ଅବଜ୍ଞାତ' ହୋଇଥିବାରୁ ସେ କ୍ରୋଧରେ ପାରିଷଦଂକୁ ଶାସନ କରିବା ବା ମୁରଶିଦାବାଦ ସିଂହାସନ ହାସଲ କରିବାପାଇଁ ଚେଷ୍ଟ କରିଥିଲେ ଓ ଭାସ୍କର ପଣ୍ଡିତଙ୍କ ସହ ମିଳିତ ହୋଇଥିଲେ । ଯେ ଦୁଃସାହସୀ ଓ ଧୈର୍ଯ୍ୟଶୀଳ । ମରହଟ୍ଟାମାନଂଙ୍କ ଚରମ ପରାଜୟ କାଳରେ ଭାସ୍କର ପଣ୍ଡିତକୁ ସେ କରିଚନ୍ତି ଉତ୍ସାହିତ ଓ ମୁର୍ଶିଦାବାଦ ଆକ୍ରମଣ କରି ଜଗତ ସେଠ ପାଖରୁ ଦୁଇକୋଟି ଟଂକା ଲୁଟି ନିଅନ୍ତି ।

**ମୁକୁନ୍ଦ ବାରିକ** - (ପ୍ରାୟଶ୍ଚିତ୍ତ) ସମସରପୁର ଉଆସର ବୁଢ଼ା ପଢ଼ିଆରୀ । ଇନ୍ଦୁ ବିନୋଦବିହାରୀଙ୍କ ଦର୍ଶନ କଥା କହିବାରୁ ଯେ ମନ୍ଦିର ସୋଧି ଦେଇଥିଲେ ।

**ମୁକୁନ୍ଦରାମ ମହାନ୍ତି** - (ପ୍ରାୟଶ୍ଚିତ୍ତ) ରାଜୀବଲୋଚନର ଭୋଜିସଭାରେ ସଭାପତି ନିର୍ବାଚନ ପ୍ରସ୍ତାବକୁ ବା ଦ୍ୱିତୀୟ କରିଥିବା ଲମ୍ବୋଦରଙ୍କୁ ବା ସାହାଯ୍ୟ କରିଥିଲେ ।

**ମୁକୁନ୍ଦା** - (ଛମାଣ ଆଠଗୁଣ୍ଠ) ମଂଗରାଜ ଘର ହଳିଆ । ମୁକୁନ୍ଦାର ତିନିକୁଳରେ କେହି ନାହିଁ । ମାଆ ସାନ୍ତାଣୀଂକ ଜନ୍ମ ସମୟକୁ ସେ ଧାଇକୁ ଡ଼ାକି ଯାଇଥିଲା ଓ ତା'ରି କୋଳରେ ସାନ୍ତାଣୀ ମଣିଷ ହୋଇଥିଲେ, 'କେବଳ ମକୁନ୍ଦାହିଁ ସାଆନ୍ତାଣୀଂକ ମୃତ୍ୟୁରେ କେବଳ କାନ୍ଦିନଥିଲା 'ପାଟିଟା ଆଁ କରି ଆଖିବୁଜି ମାଂସ -ଶୂନ୍ୟ ଢ଼େଙ୍ଗା । ହାଡୁଆ ଗୋଡ଼ ଦୁଇଟା ଲମ୍ବାଇ ଦେଇ ବାଡ଼କୁ ଆଉଜି' ବସିପଡ଼ିଥିଲା ଓ ମଝିରେ ଫାଁ ଫାଁ ନିଶ୍ୱାସ ନେଉଥିଲା । ହୁଏତ ସେଥିପାଇଁ ତାର ଶୁଷ୍କ ହୃଦୟ ଫାଟି ଯାଉ ନଥିଲା । ମଂଗରାଜ ଜେଲରେ ମୁମୂର୍ଷୁ ହେବା ଫଳରେ ତାଂକୁ ଘରକୁ ଆଣିବାକୁ କେବଳ ମୁକୁନ୍ଦାହିଁ ଉଦ୍‌ଯୋଗ କରିଚି ଓ ଦୁଇଶ ଅଣ୍ଡିରା, ଚାରି ଛ'ଟା ପହ୍ଲାଣ ସଜ ବିକ୍ରି ଟଙ୍କା ଧରି କଟକ ଯାଇଥିଲା । ସେ ମଧ୍ୟ ମଙ୍ଗରାଜଂକ ଚିକିତ୍ସା ପାଇଁ ତତ୍ପର ହୋଇଥିଲା ।

**ମୁକୁନ୍ଦା** - (ଭାଣ୍ଡାପୁଅ ଅନନ୍ତା) ଜନୈକ ଛାତ୍ର । ସେ ଆଣିଥିବା ଧୂଆଁପତ୍ରର ମାନ ନିକୃଷ୍ଟ ହୋଇଥିବା ଅବଧାନ ସୂଚାନ୍ତି ।

**ମୁତୁରୀ ମା** - (ଛମାଣ ଆଠଗୁଣ୍ଠ) ବାଘସିଂହ ବଂଶର ପୋଇଲୀ । ଟାଂଗୀ ମାଉସୀ ଘର ପଛ ଆଡ଼କୁ ଲଘୁଶଂକାକୁ ବାହାରିଲାରୁ ଯେ ଓଳିତଳ ଦେଖାଇ ବାଡ଼ି ଦୁଆରେ ଛିଡ଼ାହେଲା । ଟାଂଗୀମାଉସୀ, ସ୍ତ୍ରୀ ହଉ ପୁରୁଷ ହଉ କେହି ଅନାଇଲେ ସେ ବସି ପାରନ୍ତି ନାହିଁ କହିବାରୁ ବାଡ଼ିଦୁଆର ଆଉଜାଇ ଘର ଭିତରକୁ ଚାଲି ଆସିଥିଲା । ତା ବାଡ଼ି ଦୁଆର ଆଉଜାସହ ବଂଦ ହୋଇ ଯାଇଥିଲା ବାଘସିଂହ ବଂଶର ଭାଗ୍ୟ !! ଟାଂଗୀ ମାଉସୀର ପରିସ୍ରା ଯିବା ଓ 'ମୁତୁରୀମା'

ତାକୁ ସ୍ଥାନ ଦେଖାଇବାକୁ ଆସିବା ଏକ ଆପାତସାଦୃଶ୍ୟ ନହୋଇ ସେନାପତିଙ୍କ ଚାତୁରୀ ମନେହୁଏ ।

**ମୁନ୍‌ସୀ ଚକ୍ରଧର ଦାସ** - (ଛମାଣ ଆଠଗୁଣ୍ଠ) ପୁଲିସ ତଦାରଖିର ଦାରୋଗାଂକ ସହ ଆସିଥିଲେ ଓ ପ୍ରସଙ୍ଗ କ୍ରମେ '' ଏକା ମାଘରେ ଶୀତଗଲା ବୋଲି ମଂଗରାଜ ମନେ କରିଥିଲେ ପରା' ବୋଲି ମନ୍ତବ୍ୟଦେଇ ଏ ତଦାରଖ୍ ମାଧ୍ୟମରେ ଏକ ପ୍ରତିଶୋଧ ପରାୟଣତା କାର୍ଯ୍ୟକରୁଥିବାର ଇଙ୍ଗିତ ଦେଇଥିଲେ । ଇଏ ଥିଲେ ଜଣେ ବିଚକ୍ଷଣ ପୁଲିସ ଅମଲା ଓ ଏହାଙ୍କ ରିପୋର୍ଟ ପଢ଼ି ମେଜେଷ୍ଟର ସାହେବ କୁଆଡ଼େ ଖୁସିଥାଆନ୍ତି ।

**ମୁଟ୍ରୁ ମଳିକ** - (ଛମାଣ ଆଠଗୁଣ୍ଠ) ଜଣେ ଛାଟିଆ । ଚଂପାର ଖୁଣି ତଦାରଖ୍ ବେଳେ ଜମାଦାର ଏହାକୁ ଏକ 'ସାପକାଟି' ବୋଲି ନିର୍ଧାର୍ଯ୍ୟ କଲାପରେ ସେ ଏହି ଗଛମୂଳରେ ଏକଦା ପନ୍ଦରଟି ନାଗସାପ ଶୋଇଥିବା ପ୍ରମାଣ ଦେଇଥିଲେ ।

**ମୁରାଦ ଖାଁ** - (ଲଛମା) ମହମ୍ମଦ ସାହ ବାଜଶାହାଙ୍କ ମନ୍‌ସୁବଦାର । ଦୁଇବର୍ଷର ଖଜଣା ଅସୁଲପାଇଁ ସେ ମୁର୍ଶିଦାବାଦରେ ଧାରଣା ଦେଇ ବସିବା କଥା ଆଲିବର୍ଦ୍ଦିଙ୍କ ଦୁଃସ୍ଥିତି ବର୍ଣ୍ଣନା ପ୍ରସଙ୍ଗରେ ଉଲ୍ଲିଖିତ ।

**ମୁସ୍ତଫା ଖାଁ** - (ଲଛମା) ନବାବ ଆଲିବର୍ଦ୍ଦି ଖାଁଙ୍କ ଦ୍ୱିତୀୟ ସେନାପତି । ଘର ପଞ୍ଜାବ । ଏହାଙ୍କ ଅଧୀନରେ କିଛି ପଞ୍ଜାବୀ ବୀର କାମ କରୁଥିଲେ । ବେତନ ପାଇନଥିବା ଦୃଷ୍ଟିରୁ ଏ ବୀରମାନେ ନବାବଙ୍କ ପ୍ରତି ଥିଲେ କିଞ୍ଚିତ ବିମୁଖ । ସୈନ୍ୟ ଶ୍ରେଣୀର ଅଗ୍ର ଭାଗରେ ରହି ସୈନ୍ୟ ଚାଳନାର ଗୌରବ ନବାବ ମୁସ୍ତଫା ଖାଁଙ୍କ ଯୋଗ୍ୟତା ସତ୍ୱେ ତାଙ୍କୁ ନ ଦେଇ ମୀରଜାଫରଙ୍କୁ ଦେଇଥିବାରୁ ଏହାଙ୍କ ତିକ୍ତତା ବଢ଼ିଥିଲା । ମୀରହବିବ୍ ଏହାଙ୍କୁ ନବାବଙ୍କ ସହ ବିଶ୍ୱାସଘାତକତା କରିବାକୁ ପରାମର୍ଶ ଦେଇଥିଲେ । କ୍ରମେ ପରାଜିତ ନବାବଙ୍କ କାତର ଅନୁରୋଧରେ ଦୟାଳୁ ମୁସ୍ତଫା ଖାଁ ତାଙ୍କ ପ୍ରତି ଅନୁରକ୍ତ ରହିବାର ସିଦ୍ଧାନ୍ତ ନେଇଥିଲେ । ସମସେରର ବର୍ଗୀମାନଂକପ୍ରତି ଦେଇଥିବା ପ୍ରସ୍ତାବକୁ ମୁସ୍ତଫା ବିରୋଧ କରି ସମ୍ମୁଖଯୁଦ୍ଧ ପ୍ରତି ନିଜର ନିଷ୍ଠା ପ୍ରକଟ କରିଛନ୍ତି । ନବାବଙ୍କ ଦୃଷ୍ଟିରେ ମୁସ୍ତଫାଙ୍କ ଚରିତ୍ର ଏପରି -

''ମୁସ୍ତଫା ନିଷ୍ଠୁର ସତ୍ୟ, ମୁସ୍ତଫା ଭୟଙ୍କର କ୍ରୋଧୀ ସତ୍ୟ, ମାତ୍ର ମୁସ୍ତଫା ବୀର, ମୁସ୍ତଫା ଯୋଦ୍ଧା ଏବଂ ସତ୍ୟବାଦୀ, ଇସ୍‌ଲାମ୍ ଧର୍ମପ୍ରତି ତାହାର ଦୃଢ଼ ବିଶ୍ୱାସ । ମାନବଜାତିର ସୁମହତ ଗୁଣ ସ୍ୱଜାତି ବାସଲ୍ୟ, ସ୍ୱଜାତି ଗୌରବ ରକ୍ଷଣରେ ମୁସ୍ତଫା ତତ୍ପର ।''

**ମେନକା ଦେଈ** - (ମାମୁଁ) ଦାଶରଥି ଦାସଙ୍କ ପତ୍ନୀ । ଚିର ରୋଗିଣୀ । ଛ' ଦିନରେ ନ'ରୋଗ । ସାନବୋହୂ ବିଶାଖାର ସଣ୍ଣାହୀନ ବ୍ୟବହାର ସତ୍ତ୍ୱେ ତା ପ୍ରତି କୋମଳଚିତ୍ତ । ଚରିତ୍ରଟିର ବିକାଶର ସମସ୍ତ ସମ୍ଭାବନା ଧାଈମା ସରସ୍ୱତୀ ଦେଈଙ୍କ ପ୍ରଭାବ-ଛାୟାରେ ନଷ୍ଟ ହୋଇଯାଇଚି ।

**ମୋହିନୀ -** (ଗାରୁଡ଼ିମନ୍ତ୍ର) ମଦନର ସ୍ତ୍ରୀ । ଗଳ୍ପର ନାୟିକା । ପିତା-ରାମରାମ ଦାସ ମଙ୍ଗଳପୁର ତାଲୁକର ଜମିଦାର । ବୟସ ପନ୍ଦର । ଢଉଲଢାଉଲ । ଗୋଟିଏ କାଠିରେ ଗଢା, ଚଂପା ଫୁଲପରି ରଙ୍ଗ, ପରମାସୁନ୍ଦରୀ, ପାଠୋଇ, ଛାନ୍ଦକୁଛାନ୍ଦ ଗୀତ ମୁହେଁ ମୁହେଁ ହାଙ୍କିଯାଏ । ହେଲେ ପାରିବାରିକ ଓ ପାରଂପରିକଭାବେ ଅତ୍ୟନ୍ତ ଲଜ୍ୟାଶୀଳ । ସ୍ୱାମୀ ଆଗରେ ଓଢ଼ଣା ଖୋଲିବା' ସ୍ପଷ୍ଟ କଥା ହେବା ପର୍ଯ୍ୟନ୍ତ ଅନୁଚିତ ଜ୍ଞାନକରେ । ଏହାରି ସଂସ୍କାର ପାଇଁ ମଦନମୋହନ ଚେଷ୍ଟିତ ଥିଲେ ଓ ସଫଳ ହୋଇଥିଲେ ।

**ମୌନବାବାଜୀ -** (ମୌନାମୌନୀ) ଖଣ୍ଡଗିରିର ହାତୀଗୁଂଫା ସମୀପବର୍ତ୍ତୀ କ୍ଷୁଦ୍ରଗୁମ୍ଫାରେ ମାତାଜୀଙ୍କ ସହ ବସବାସ କରୁଥିଲେ । ବୟସ ଆନୁମାନିକ ତିରିଶ ବା ବତିଶ । ସୁସ୍ଥ, ସବଳ, ସୁନ୍ଦର । କାହା ସହିତ କିଛି କଥା କହୁନଥିବାରୁ ମୌନ ବାବାଜୀ ଭାବେ ଖ୍ୟାତଥିଲେ । ଏମାନଙ୍କ ଆବଶ୍ୟକ ଦ୍ରବ୍ୟ ହାତୀ ଗୁମ୍ଫାର ମହନ୍ତ ବାବା ସଂଗ୍ରହ କରିଦେଉଥିଲେ । ଗଳ୍ପର ପରିଣତିରେ ଜଣାପଡିଛି, ଯେ ଜଣେ ଭଣ୍ଡ ସାଧୁ । କଲିକତାର ଜଣେ ବଡ଼ଲୋକଙ୍କ ଗୁମାସ୍ତା ଭାବେ ତାଙ୍କର ଧନରତ୍ନ ଓ ବିଧବା ବଧୂ ସହ ଫେରାରଥିଲେ ।

**ମୌନୀମାତା -** (ମୌନାମୌନୀ) ହାତୀଗୁମ୍ଫା ସମୀପବର୍ତ୍ତୀ ଏକ କ୍ଷୁଦ୍ର ଗୁମ୍ଫାରେ ମୌନ ବାବାଜୀଙ୍କ ସହ ବସବାସ କରୁଥିଲେ । ସେ ସୁନ୍ଦରୀ ବୋଲି ସୂଚିତ । ସର୍ବଦା ନୀରବ ରହୁଥିବାରୁ ମୌନୀମାତା ଭାବେ ଖ୍ୟାତ । ପୁଲିସ ଧରିବା ପରେ ଜଣାପଡିଚି ଯେ କଲିକତାର ଜଣେ ବଡଲୋକଙ୍କ ବିଧବା ବଧୂ । ଧନରତ୍ନ ଓ ଗୁମାସ୍ତା ସହ ଫେରାର ଥିଲେ । ଗୁମାସ୍ତାହିଁ ମୌନବାବା ସାଜିଥିଲେ।

**ମୌଲବୀ ଅବଦୁଲ ଖାଁ -** (ପୁନର୍ମୂଷିକୋଭାବ) ପ୍ରଥମଶ୍ରେଣୀ ଡେପୁଟି ମାଜିଷ୍ଟ୍ରେଟ । ଏହାଙ୍କ ଇଜଲାସରେ ରାମା ଭଣ୍ଡାରୀର ବିଚାରହୋଇଥିଲା, ପୁଲିସ ଉପରେ ଯେ ସବୁବେଳେ ବିରକ୍ତ ଥାଆନ୍ତି ।

**ମୃତ୍ୟୁଂଜୟ ବାଣୀଭୂଷଣ ବେଦାନ୍ତ ବାଗୀଶ -** (ମାମୁ) ପଣ୍ଡିତ ସଭାରେ ଯୋଗ ଦେଇଥିବା ଜନୈକ ପଣ୍ଡିତ । ଈଶ୍ୱରଂକ ଅସ୍ତିତ୍ୱ ସଂପର୍କରେ ଆଲୋଚନା କରିଥିଲେ ।

**ଯଶୋଦା -** (ଛମାଣ ଆଠଗୁଣ୍ଠ) ଅସୁରଦୀଘି ବର୍ଣ୍ଣନା ପ୍ରସଙ୍ଗରେ ଯଶୋଦାର ଉଲ୍ଲେଖ ଅଛି । ପାଣିରେ ପେଟ ବୁଡାଇ ସେ ଦାନ୍ତ ଘଷୁଥିଲା । ପାଞ୍ଚବରଷିଆ ମାରକଣ୍ଡିଆ ନାଚି କୁଦି ପାଣି ଗୋଳିଆ କଲା ଓ ଯଶୋଦା ଦେହରେ ପାଣିଛିଟା ପଡ଼ିବାରୁ ସେ ଉତ୍ୟକ୍ତ ହେଲା ଓ କୁତ୍ସିତ ଭାଷାରେ ତାକୁ ଗାଳି ଦେବାକୁ ଲାଗିଥିଲା । ଯେତେବେଳେ ସେ ମାରକଣ୍ଡିଆର ''ପରମାୟୁର ସ୍ୱଚ୍ଛତା କାମନା କଲା ସେତେବେଳେ ମାରକଣ୍ଡିଆ ମା'ଆସି ସମାନ ସ୍ୱରରେ ତାର ଉତ୍ତର ଦେବାକୁ ଲାଗିଲା ଓ ପରାସ୍ତ ହେଲା ।'' ମାରକଣ୍ଡିଆ ପାଣି ଗୋଳିଆ କରୁଥିବାର ଆହୁରି ବିଶ୍ୱାସ ଯୋଗ୍ୟ ପ୍ରମାଣ ଫକୀରମୋହନ ଏ ପ୍ରସଙ୍ଗରେ ଦେଇ ଯଶୋଦାକୁ ଓ ତା ମାଧ୍ୟମରେ ଘାଟର ଅପରିଚ୍ଛନ୍ନତା ସଂପର୍କରେ ସୂଚନା ଦିଅନ୍ତି ।

**ଯୁଧିଷ୍ଠିର ସାହୁ** - (ଅଧର୍ମବିତ୍ତ) ଜାତି ପାଟକ । ବୌଦ ଏଲାକାର ହରିପୁର ଗାଁର ପ୍ରଧାନ ମହାଜନ । ଧାର୍ମିକ, ସତ୍ୟବନ୍ତ । ପାଞ୍ଚ-ସାତ ଲକ୍ଷଟଂକାର ବିଷୟ ସମ୍ପତ୍ତି । ଘରେ ଠାକୁରବାଡ଼ି ଓ ସଦାବର୍ତ୍ତ । ଅପୁତ୍ରିକ । ଏକମାତ୍ର ଝିଅ ପଦ୍ମାବତୀର ବୟସ ପନ୍ଦର-ଷୋହଳ । କନ୍ୟା ସମସ୍ତ ସମ୍ପତ୍ତିର ଉତ୍ତରାଧିକାରିଣୀ । ମକ୍ରାମପୁରର କୁବେର ସାହୁର ଭଣ୍ଡ ସାଧୁପଣରେ ମୁଗ୍ଧ ହୋଇ କୁବେରର ପୁଅ ବିଦ୍ୟାଧର ସହ ପଦ୍ମାବତୀର ବିବାହ କରିଦିଅନ୍ତି । ପ୍ରାୟ ପଚାଶ ହଜାର ଟଂକାର ଯୌତୁକ ଦିଅନ୍ତି । ପରେ ସୁଧଖୋର କୁବେର ସାହୁର ମୃତ୍ୟୁ ହୁଏ । ସ୍ତ୍ରୀଇଁ ଓ କନ୍ୟା ନୌକା ବୁଡ଼ିରେ ବିଚ୍ଛିନ୍ନ ହୋଇଯାନ୍ତି । ପରିଶେଷରେ ଝିଅ ଜୋଇଁଙ୍କ ସହ ମିଳନ ହୁଏ ଓ ସ୍ତ୍ରୀଇଁ ହାତରେ ସମ୍ପତ୍ତି ରକ୍ଷଣା ବେକ୍ଷଣ ଦାୟିତ୍ୱ ଦେଇ ନିଜେ ଧର୍ମାଚାରରେ ସମ୍ପୂର୍ଣ୍ଣ ମନୋନିବେଶ କରନ୍ତି ।

**ରଙ୍ଗାଧର ପଟ୍ଟନାୟକ** - (ମାମୁ) ଉତ୍ତରରାୟ ଉଆସର ସଦର ଛାମୁ କରଣ । ଦାଶରଥିଂକୁ ପ୍ରତାପ ଓ ଚାନ୍ଦମଣିଂକ ମଙ୍ଗଳକୃତ୍ୟ ବେଳେ ବରପକ୍ଷରୁ କିଛି ସାହାଯ୍ୟ କରାଯିବ ବୋଲି ପ୍ରସ୍ତାବ ଘେନି ଇଏ ଆସିଥିଲେ । ଉତ୍ତରରାୟଂକ ମୃତ୍ୟୁବେଳେ ସମସ୍ତେ ଦୁଃଖାଭିଭୂତ ହୋଇ ପଡ଼ିଥିବା ବେଳେ ଇଏ ତତ୍ପରତା ପ୍ରକାଶ କରିଥିଲେ ।

**ରଙ୍ଗାଧର ମହାନ୍ତି** - (ସଭ୍ୟଜମିଦାର) ଗୋପାଳ ମହାପାତ୍ରଙ୍କ ପାଞ୍ଜିଆ । ବିଶ୍ୱାସୀ, କାମିକା । ସନ୍ତାଣୀଙ୍କ ଡାହାଣ ହାତ ।

**ରଙ୍ଗାଧର ମହାନ୍ତି** - (ବଗୁଲା ବଗୁଲୀ) ଭୁଷଣ୍ଡପୁର ଗାଁର ଅବଧାନ । ବିଦିଆ ପାତ୍ର ଚଉକିଆ ପୁଅ ସପନାର ବିବାହ ଖର୍ଚ୍ଚ ଗ୍ରାମବାସୀ ତୁଲାଇବାକୁ ରାଜି ହେବାରୁ ଖର୍ଚ୍ଚ ତାଲିକା ସେ ପ୍ରସ୍ତୁତ କରିଛନ୍ତି ।

**ରଙ୍ଗାଭଟ୍ଲା ଭେଙ୍କଟା ପାନ୍ତଲୁ** - (ମାମୁ) ପଣ୍ଡିତ ସଭାରେ ଉପସ୍ଥିତ ବଡ଼ଗଡ଼ ରାଜସଭାର ପଣ୍ଡିତ । ଗମ୍ଭୀର ଦାର୍ଶନିକ ତତ୍ତ୍ୱ ଆଲୋଚନାରେ ଏ ଚରିତ୍ର ମାଧ୍ୟମରେ ହାସ୍ୟୋଦ୍ରେକ କରାଯାଇ ପରିବେଶକୁ ଲଘୁକରାଯାଇଛି ।

**ରଘୁନାଥ ଦେ** - (କାଳିକା ପ୍ରସାଦ ଗୋରାପ) ତୁର୍କ ଜଳଦସ୍ୟୁବିରୋଧୀ ସଭା ଏହାଙ୍କ ଘରେ ବସିଥିଲା । ''କାଳିକାପ୍ରସାଦ'' ଏହାଙ୍କ ଗୋରାପ (ବୋଇତ) । ଗୋରାପଟି ତୁର୍କ ଜଳ ଦସ୍ୟୁଙ୍କଦ୍ୱାରା ଅପହୃତ ହୋଇଥିଲା । ସୁତାନଟୀ ହାଟରେ ଇଂରେଜଙ୍କ ସହ କାରବାର ସପକ୍ଷରେ ଇଏ ମତ ଦେଇଥିଲେ ।

**ରଘୁବାଘ ସିଂହ** - (ପ୍ରାୟଶ୍ଚିତ୍ତ) କାର୍ଯୀ । ଗୋବିନ୍ଦକୁ ମା'ର ଅସୁସ୍ଥତା କଥା ଜଣେଇ ଡ଼ାକିଆସିଥିବା ଦଳରେ ଯେ ମଧ ଥିଲେ । ସବୁ ଦୁର୍ଘଟଣା ମୂଳରେ ଯେ ସଦାନନ୍ଦ ରହିଚି, ଏକଥା ପ୍ରଥମଥର ପ୍ରତ୍ୟକ୍ଷଭାବେ ଏହି ଚରିତ୍ରହିଁ ଦୁର୍ଗାଦାସ ମହାନ୍ତିଙ୍କୁ କ୍ଷୋଭପ୍ରକାଶ ଛଳରେ ଜଣାଇଚି ।

**ରହିମ ବକ୍ସ** - (ମାମୁ) ନାଜରଖାନାର ପିଆଦା । ନାଜରଙ୍କ ସହ ଏହାର ସଂପର୍କ ତିକ୍ତ ।

**ରାଘବ ମହାନ୍ତି** - (ମାମୁ) 'ରାଘବ ମହାନ୍ତି କିଛି ଡ଼େଙ୍ଗା ଭଳିଆ ଲୋକ, ମଇଁଷାଳ ପରି ଖୁବ୍ ବଳୁଆ ପରି ଜଣାଯାଏ । ଦେହର ରଙ୍ଗଟା କାଳିଆ ହେଲେ ନବଘନ କାଳିଆ ପରି ସୁନ୍ଦର ନୁହେଁ, ଟିକେ ପାଉଁଶିଆ ରଙ୍ଗମିଶା - ତାହା ବି କିଛି ଚିକ୍କଣ ଚାକଣ ନୁହେଁ ଟାଉଁସିଆ ଆଉ ଖସଖସିଆ। ମୁଣ୍ଡବାଳଗୁଡ଼ାକ କେରା କେରା । ଆଉ ସାନସାନ । ତେଲ ବା ପାନିଆ ନଲାଗିଲେ ଯେପରି ଛଟାଳିଆ ଆଉ ମେଣ୍ଢାଲୁମିଆ ମୋଡ଼ା ହୋଇଯାଏ ସେହିପରି । ମୁଖଟି ଥାଳିପଟ ପରି ଚକା, ଲଲାଟ ଆଉ ନାକ କିଛି ଚେପ୍‌ଟା, ପୁଣି ନାକଟି ଟିକିଏ ସାନ ଆଉ ମୋଟା, ଗାଲ ଯୋଡ଼ିକ ଫୁଲୁକା ଫୁଲୁକା, ଓଠଟି ମୋଟା ଆଉ ତଳକୁ ଟିକିଏ ଝୁଲିପଡ଼ିଛି । ଦୁଇକଳ ଶାରୀ କଳପରି ଧଳାଧଳା ଦାନ୍ତ ଗୁଡିଏ ବଡ଼ବଡ଼, ଫାଙ୍କଫାଙ୍କ । ** ଆଖି ଯୋଡ଼ିକ ଶୂକର ନେତ୍ରପରି ଗୋଲଗୋଲ, ସାନସାନ, ଆଉ ଉଞ୍ଚା ଉଞ୍ଚା । ଭ୍ରୂବିରଳ ପକ୍ଷ୍ମମୁକ୍ତ, ବେକଟି ସାନ ଆଉ ମୋଟା । ଛାତିଟା କିଛିକମ୍ ଚଉଡ଼ା - ପେଟଟି ଦୁଇ ନଉତିଆ ଘୁମ୍ପରି ବିଶାଳ, ଏଥକୁ ହରଦରରେ ଛାତିପେଟ ସମାନ । ଦୁଇ ଚେପ୍‌ଟା ବାହୁରେ ଖୁବ୍ ବଳଥିବାର ଜଣାଯାଏ, କହୁଣୀଠାରୁ ହାତ ପାପୁଲିଯାଏ କିଛି ଖର୍ବ, ବାଁ ହାତ କବଜାଟା ଟିକିଏ କେମ୍ପା ଭଳିଆ । ** ଗୋଡ଼ ଯୋଡ଼ିକ ଖୁବ୍ ବଳୁଆ ଆଉ ଚଣ୍ଡଳିଆ । ** ଚର୍ମଟାଣୁଆ ଆଉ ଖସଖସିଆ ** ପହରଣ ଆଣ୍ଠୁଲୁଚା ଖଣ୍ଡିଏ ମଇଳା ଲୁଗା, କାନ୍ଧଉପରେ ସେହିପରି ଖଣ୍ଡେ ଗାମୁଛା ।' - ଯେ ହେଉଛନ୍ତି ନାଜର ନଟବରଙ୍କ ଶଳା । ରୂପ ଯେମିତି, ବୁଦ୍ଧି ସେମିତି କିମ୍ଭୁତ । ଏଇ ଚରିତ୍ରପାଇଁ ଫକୀରମୋହନ ବିଶେଷ ଆଗ୍ରହ ପ୍ରଦର୍ଶନ କରି ଖୁବ୍ ଯତ୍ନରେ ଏହାକୁ ଗଢ଼ିଛନ୍ତି । ଚରିତ୍ରଟି ସ୍ଥୂଳବୁଦ୍ଧି ସଂପନ୍ନ, ଗ୍ରାମ୍ୟ । ପ୍ରଭୁଦୟାଳର ଶଠତା ଆଗରେ ବଳିପଡ଼ିଥିବା ଏକ ନିରୀହ ଛାଗ । ଏହି ଛାଗତ୍ୱ ପାଇଁ ତାକୁ ଉପନ୍ୟାସର ପରିଣତରେ କଠିଣ ପରିଶ୍ରମ ସହ ଏକବର୍ଷ କାରାଦଣ୍ଡ ଭୋଗିବାକୁ ପଡ଼ିଥିଲା ।

**ରାଜକିଶୋର** - (ପାଠୋଇବୋହୂ) ପେସ୍କାର । ମୁକ୍ତାର ଗୋପାଳଚରଣଙ୍କ ପଡ଼ୋଶୀ । ଗୋପାଳ ପାଇଁ କନ୍ୟା ଖୋଜିବାରେ ଯେ ଉଦ୍ୟମ କରିଥିଲେ ।

**ରାଜକିଶୋର ଚୌଧୁରୀ** - (ବାଲେଶ୍ୱରୀ ରାହାଜାନୀ) ପୁଲିସ ସବଇନ୍‌ସପେକ୍ଟର । ଜଣେ ସୁଯୋଗ୍ୟ କର୍ମଚାରୀ ଭାବେ ଏହାଙ୍କର ଖ୍ୟାତି ରହିଥିଲା । ମିଃ ସଟଲ ଓୟାର୍ଥ, ବାଲେଶ୍ୱର ପୁଲିସ ସୁପରିଣ୍ଟେଡ଼େଣ୍ଟଙ୍କଦ୍ୱାରା ନିଯୁକ୍ତ ହୋଇ ଡ଼କାୟତି ଧରିବାର ଚେଷ୍ଟା ଓ ବହୁ ଆୟାସପୂର୍ବକ ସେଥିରେ ସଫଳ । ଏହାଂକ କାର୍ଯ୍ୟପ୍ରାଣାଳୀର ବର୍ଣ୍ଣନା ସ୍ଥଳରେ ଏହାଙ୍କ କର୍ତ୍ତବ୍ୟନିଷ୍ଠା, ସଦ୍‌ଯୋଗ ପ୍ରକାଶିତ ।

**ରାଜୀବଲୋଚନ** - (ସଭ୍ୟଜମିଦାର) ଗୋପାଳ ମହାପାତ୍ରଙ୍କ ପୁଅ । ସାନବେଳୁ ଚାହାଳୀ ଓ ଗାଁରେ ଉତ୍‌ପାତ କରିବାରୁ ସଭିଏଁ ବ୍ୟତିବ୍ୟସ୍ତ ଥିଲେ । ବାପାସହ କଲିକତା ଆସି 'କେଲ୍‌କେଟା ଏଣ୍ଟ୍ରି ଏକାଡ଼େମୀରେ ପଢ଼ିଲେ । ମାତ୍ର ପାଠନାଁରେ ବାପକୁ ଭଣ୍ଡାଇ ଟଙ୍କା ଉଡ଼ାଇଥିଲେ । ପଲ୍ଲବଗ୍ରାହୀ ଶିକ୍ଷିତ । ବାପାଙ୍କ ମୃତ୍ୟୁରେ ଡକାପାରି କାନ୍ଦିବାକୁ କୁସଂସ୍କାର କହି ତିନିଦିନ ଶୋକସଭାରେ ବକ୍ତୃତା ଦେଇଥିଲେ । ହାତରେ କଳାକନା ବାନ୍ଧିଥିଲେ । ଶ୍ରାଦ୍ଧ ନକରି ସଭାଗୃହରେ

ଭୋଜି, ଦରିଦ୍ର ଓ ଡ଼ାକ୍ତରଖାନାରେ ଅର୍ଥଦାନ,ପ୍ରସ୍ତାବ ଦେଇଥିଲେ । ଜମିଦାର ଭାବେ ଗ୍ରାମର କୁସଂସ୍କାର ଦୂରୀକରଣ ପାଇଁ ଆଗ୍ରହୀ ହୋଇ 'କୁସଂସ୍କାର ବିମର୍ଦ୍ଦିନୀ ସମିତି' ଓ ନାରୀ ସ୍ୱାଧୀନତା-ବିବର୍ଦ୍ଧିନୀ ସଭା'ର ପ୍ରତିଷ୍ଠା କରିଥିଲେ । ସଭାର ଖର୍ଚ୍ଚ ନିର୍ବାହ ପାଇଁ ବିଶ୍ୱାସୀ ପୁରୁଣା ଗୁମୁସ୍ତାକୁ କାଢ଼ି ନୂଆ ଜଣକୁ ନିଯୁକ୍ତି ଦେଲେ । ବିବାହକଲେ ଅଜ୍ଞାତକୁଳଶୀଳ ନୟନତାରା ଦୁଃଖପାଶୋରାକୁ । ଏଥିରେ ଜମିଦାରୀକୁ ଦଶହଜାର ଟଂକାରେ ରେଜେଷ୍ଟରୀ କରିଦେଇ ଆସିଥିଲେ । ସ୍ତ୍ରୀକୁ 'ମିସେସ ମହାପାତ୍ର' ଡ଼ାକିବାକୁ ଅନ୍ୟମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଅପରିଣାମଦର୍ଶିତା, ଅଦୂରଦର୍ଶିତାପାଇଁ ଋଣଗ୍ରସ୍ତ ହେଲେ, ପରିଶେଷରେ ଜୀବିକା ନିର୍ବାହ କଲେ ଆସାମରେ ଖାନସମା ହୋଇ । ତଥାକଥିତ ଆଧୁନିକ ଶିକ୍ଷା ପ୍ରାପ୍ତ ଓ ସଂସ୍କାର ଆଗ୍ରହୀ ଏ ଜମିଦାରଂକ କାର୍ଯ୍ୟକଳାପର ପ୍ରତିଟି ସ୍ତରରେ-ବିଂଶଶତାବ୍ଦୀର ଆଦ୍ୟପାଦର ନବ୍ୟ-ସଭ୍ୟଙ୍କ ମାନସିକତା ଫୁଟିଉଠିଚି । ରାଜୀବଲୋଚନ ଏକ ପ୍ରତିନିଧି ସ୍ଥାନୀୟ ଚରିତ୍ର । ଯୌବନ, ଧନସଂପତ୍ତି, ପ୍ରଭୁତ୍ୱ ଓ ଅବିବେକୀତାର ସମାହାରରେ ପ୍ରମୂର୍ତ୍ତ ନଷ୍ଟଚରିତ୍ର ।

**ରାଜୀବଲୋଚନ** - (ପ୍ରାୟଶ୍ଚିତ୍ତ ) କର୍ଷଣ ମହାନ୍ତିଙ୍କ ସ୍ଥାପିତ ଚାଟଶାଳୀରେ ପ୍ରାଥମିକ ଶିକ୍ଷାଲାଭ ଓ ପରବର୍ତ୍ତୀ ସମୟରେ କଟକରେ ତାଂକର ଆର୍ଥିକ ସହାୟତରେ ଶିକ୍ଷାଲାଭ । ବିଧବାମାତା ବହୁଦିନରୁ ଉଆସରେଥିବା ସୂଚିତ । ଗୋବିନ୍ଦ ଓ ଇନ୍ଦୁମତୀର ବିବାହପାଇଁ ଏହାର ବୁଦ୍ଧି ଓ ସଂକର୍ଷଣଂକ ଧନ କାମକରିଥିଲେ । ଏହାର ଖଳତ୍ୱ ଏପରି ଅମାନବୀୟ ଯେ ଗୋବିନ୍ଦ ମାଡ଼ଖାଇ ମୁମୂର୍ଷୁଥିବା ଅବସ୍ଥାରେ ବି ଡ଼ାକ୍ତର ଡାକିବାକୁ କୌଣସି ଉଦ୍‌ଯୋଗ ନ କରିବାକୁ ସେ ଅନ୍ୟମାନଙ୍କୁ ପ୍ରଭାବିତ କରିଥିଲେ । ଯଦି ଓ ଗୋବିନ୍ଦ ଲେଖାଯୋଖାରେ ତାର ଥିଲା ଭିଣୋଇ । ସ୍ୱାର୍ଥସାଧନ ପାଇଁ ଯେକୌଣସି ନିନ୍ଦନୀୟ, ଅମାନବୀୟ ଆଚରଣ କରିବାକୁ ଯେ ଆଦୌ ପଶ୍ଚାଦ୍‌ପଦ ହୋଇନାହିଁ । ଏଇ ଚରିତ୍ରଟିର ପରିଣତି ବା ପ୍ରାୟଶ୍ଚିତ୍ତ ସଂପର୍କରେ ଫକୀରମୋହନ ଆଶ୍ଚର୍ଯଜନକ ଭାବେ ନୀରବ ।

**ରାଧିକା** - (ଲଛମା) ମଧୁମଲ୍ଲକାଣ୍ଡୀର ଜନୈକ ଝିଅ । ଗ୍ରାମରେ ବୁଦ୍ଧିମତୀ ବୋଲି ପରିଚିତା । ଜଗାଫତେ ସିଂହମା ମରହଟ୍ଟା ଦି'ଜଣ ତୁଠ ପାଖରେ ବସିଥିବା କଥା ଏହାକୁ କହିଥିଲେ । ରାଧିକା ତୁଠ ପର୍ଯ୍ୟନ୍ତ ଯାଇଥିଲେ ବୁଝିପାରିଥାନ୍ତା ଦି'ଜଣ ନିଆଶ୍ରୀ ବୁଢ଼ୀ ବସିଛନ୍ତି, ବର୍ଗୀନୁହଁ । ମାତ୍ର ରାଧିକା ଆପଣା ବୁଦ୍ଧିରେ ଭାବିନେଲେ ମରହଟ୍ଟାତ ଆସିଥିବେ ଅନ୍ୟୂନ ହଜାରେ ଜଣ । ସେ ଚିତ୍କାର କରିଥିଲେ, ପଳାରେ.... ମରହଟ୍ଟା ଆଇଲେ.... । ଆଉ ଚାହୁଁ ଚାହୁଁ ମଧୁମଲ୍ଲବାସୀ ପାଇକଗାଁଟି ଜନଶୂନ୍ୟ ହୋଇଯାଇଥିଲା ।

**ରାଧୀ** - (ପାଠୋଇବୋହୂ) ପେସ୍କାର ରାଜକିଶୋରବାବୁଙ୍କ ଝିଅ । ବୟସ ୬ଠର । ଜେଜେମା ସୀତା ସହ ଗୋପାଳବାବୁଙ୍କ ସ୍ତ୍ରୀ ସରସ୍ୱତୀର ସେବା ଶୁଶ୍ରୂଷା କରିଛି । ସରସ୍ୱତୀର ଅନ୍ତରଂଗ ।

**ରାମକୃଷ୍ଣ ମହାନ୍ତି** - (ଲଛମା) ନାୟିକା ସୁଲୋଚନାର ବାପା ।

**ରାମଚନ୍ଦ୍ର ମଙ୍ଗରାଜ** - (ଛମାଣ ଆଠଗୁଣ୍ଠ) 'ରାମଚନ୍ଦ୍ର ମଙ୍ଗରାଜ ଜଣେ ମଫସଲର

ଜମିଦାର, ମଧ ମହାଜନ' - ଉପନ୍ୟାସର ଏଇ ପ୍ରଥମ ବାକ୍ୟରୁ ରାମଚନ୍ଦ୍ରଂକ ବୃତ୍ତି ଓ ସାମାଜିକ ସ୍ଥିତିର ସୂଚନା ମିଳେ । ତାଙ୍କ 'ଜମିଦାରୀର ନାମ ଫତେପୁର ସରଖଣ୍ଡ । ସଦରଜମା ପାଞ୍ଚହଜାର, ଅଠେଇଶ ବାଟି ବାହେଲ ଲାଖରାଜ, ବାଜିଆପ୍ତି ପନ୍ଦରବାଟି ସତେଇଶ ମାଣ । ... ଲୋକେ କହନ୍ତି ଚାଳିଶ ପଞ୍ଚାଶ ହଜାର ଟଙ୍କା ମହାଜନୀରେ ଖେଳୁଅଛି .... ।' ମଙ୍ଗରାଜ ମାଟିରୁ ସୁନାଫଳାନ୍ତି । ଗାଁ ପଧାନଙ୍କଠାରୁ ଦୁଇମାଣ ଜମି ଭାଗରେ ଧରିଥିଲେ । ମାତ୍ର ପରବର୍ତ୍ତୀ ସମୟରେ ସେ ହେଲେ ଫତେପୁର ସରଖଣ୍ଡର ଜମିଦାର !! ଏହାଙ୍କ ପିତା-ଧନୀ ନାୟକ, ବୟସ-ବାବନ । ବିବିଧଧରଣର ଶୋଷଣରେ ସିଦ୍ଧହସ୍ତ । ଏଥିରେ ସହାୟିକା ଥିଲେ ଦାସୀ ଚଂପା, ଯାହାସହ ଏହାର ସଂପର୍କ ସନ୍ଦେହଜନକ । ପରିବାର ବୋଇଲେ ସ୍ତ୍ରୀଙ୍କୁ ଛାଡ଼ି ତିନିପୁଅ, ତିନିବୋହୂ, ଝିଅ । ବାପ, ପୁଅଙ୍କର ସୌହାର୍ଦ୍ଦ୍ୟ ନଥାଏ । ଆପଣା ଚାତୁରୀ ବଳରେ ସେଖ୍ ଦିଲଦାର ମିଆଁଙ୍କଠାରୁ ସେ ଫତେପୁର ସରଖଣ୍ଡ ଜମିଦାରୀର ସରବରାକାରୀ ଓ ସମସ୍ତ କ୍ଷମତା ପାଇଥିଲେ । ଆପଣା ଖଳବୁଦ୍ଧିରେ ସେ ପରେପରେ ହୋଇପାରିଥିଲେ ଏହାର ଜମିଦାର । ସେଥିରେ ବିପୁଳ ଗୋଧନର ଅଧିକାରୀ । ବଳଦ ବାଦ୍ ଯାଇ ସଂଖ୍ୟାଥିଲେ ତିନିଶହରୁ ଉର୍ଦ୍ଧ୍ୱ । ଅଥଚ ଯେ ଲୋଭ କରିବସିଲେ ସାମାନ୍ୟ ଗାଈଟିଏ ନେତକୁ, ଯାହା ବହନକରି ଆଣିଥିଲା ତାଂକର ପାରିବାରିକ ସାମାଜିକ ବିପର୍ଯ୍ୟୟକୁ । ଶେଷରେ ଜନୈକା ତନ୍ତୀଆଣୀ ସାରିଆର ହତ୍ୟାକାରୀଭାବେ ସେ ହୋଇଥିଲେ ଗିରଫ । ବିପର୍ଯ୍ୟୟ ସରିନାହିଁ ଏଇଠି, ଓକିଲ ରାମରାମ ଲାଲା ବିପଦବେଳେ ପାଖରେ ଛିଡ଼ା ହେବାର ବିଶ୍ୱାସ ଦେଇ ସବୁ ସଂପତ୍ତି ତାଂକଠାରୁ ଲେଖାଇନେଇ ବିଶ୍ୱାସଘାତକତା କରିଥିଲେ, ପାଗଳ ଭଗିଆ ତାଂକ ନାକ କାମୁଡ଼ି ଛିଣ୍ଡାଇଦେଇଥିଲେ, ରତନପୁର ଡୋମମାନେ କାରା କୋଠରୀରେ ବାଡ଼େଇ ଥିଲେ ଓ ତାଂକୁ ମୁମୂର୍ଷୁ କରିଥିଲେ । ଏପରି ଏକ ପ୍ରତିପତ୍ତିଶାଳୀ ଚରିତ୍ରର ପରିଣତି ଏପରି କ୍ରମାଗତ ଦୁର୍ଭୋଗ ମଧରେ ସଂସାଧିତ ହୋଇଚି । ଦୁର୍ଭୋଗ ଏତିକିରେ ସରିଯାଇନାହିଁ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଗୋପିଆତନ୍ତୀ ପରି ମୂର୍ଖବୈଦ୍ୟ ପାଖରେ ଚିକିତ୍ସିତ ହେବାର ବିଡମ୍ବନା ମଧ ତାଂକ ଭାଗ୍ୟରେ ଘଟିଛି । ଏହାଙ୍କ ଜୀବନଚରିତ୍ର ପ୍ରକାଶ ଯେପରି ଉପନ୍ୟାସର ଲକ୍ଷ୍ୟ । ମଙ୍ଗରାଜଙ୍କ ଚାତୁରୀ, କୌଶଳ, ନିଷ୍ଠା ତାଂକୁ ବିତ୍ତ ଦେଇଥିଲା, କ୍ଷମତା ଦେଇଥିଲା - ଅପକର୍ମ, ଶୋଷଣ ଓ 'ଚକ୍ରାନ୍ତ ତାଂକୁ କରିଥିଲା ବିପଦ୍ଗ୍ରୀକ, ବିପର୍ଯ୍ୟସ୍ତ । ପୁତ୍ରମାନଙ୍କୁ କରିଥିଲା କୁଳାଙ୍ଗାର, ଓ ସର୍ବଶେଷରେ ସେ ବରଣ କରିଥିଲେ ପୀଡ଼ାଦାୟକ ମୃତ୍ୟୁ !

**ରାମଦୟାଲ ଭଗତ** - (ମାମୁ) ପ୍ରଭୁଦୟାଲର ବାପା । ବିହାରର ଜଣେ ଶୁଣ୍ଢି ମହାଜନ । ଜଣେ ବଡ଼ବେପାରୀର ନୌକର ହୋଇ କ୍ରମେକ୍ରମେ ଅର୍ଥସଂଚୟ କରି ମହାଜନୀ କରିଥିଲେ । ଖୁବ୍ କୃପଣ । ନିଜର ସବୁକାମ ନିଜେ କରନ୍ତି ବୃଦ୍ଧ ବୟସରେ ଏହାଙ୍କର ପୁତ୍ରଲାଭ ହେଲା, ପ୍ରଭୁଦୟାଲ । ତାକୁ ଜଣେ ହାକିମ ବା ଓକିଲ କରିବାର ସ୍ୱପ୍ନଦେଖି ଇଂରାଜୀ ପଢ଼ାଇବାପାଇଁ ବିନାଦ୍ୱିଧାରେ ଅର୍ଥ ଖର୍ଚ୍ଚ କରୁଥିଲେ ।

ରାମଦେବ ଲାଲ - (ପ୍ରାୟଶ୍ଚିତ୍ତ) ରାଜୀବଲୋଚନ ରହିଥିବା ଭଡ଼ାଘରର ମାଲିକ ହରଦେବଲାଲର ବଡ଼ପୁଅ । ସେ ସୌକୀନ ଥିଲେ । ଘରଟି ଖୁବ୍ ଯତ୍ନର ସହ ସେ କରିଥିଲେ । ମାତ୍ର ଭଡ଼ା ଦିଆଗଲା ।

ରାମ ଦ୍ୱିବେଦୀ - (ଅଜାନାତିକଥା) ଅଜାଭାବେ ଚିତ୍ରିତ । ନାତି ଗଣପତିକୁ ନାନାଦିପ୍ରଶ୍ନ କରିଥିଲେ । 'ଗେଜେଟ'ରେ ପ୍ରକାଶିତ ଖବର ଓ 'ସାହିତ୍ୟ'ରେ (ଉତ୍କଳ-ସାହିତ୍ୟ) ପ୍ରକାଶିତ ଗପ ବା ସାହିତ୍ୟର ଭେଦ ସଂପର୍କରେ ନାତିକୁ ପ୍ରଶ୍ନ କରିଥିଲେ । କାଳ୍ପନିକ 'କାହାଣୀ' ଅପେକ୍ଷା ପୁରାଣର 'ସତ୍ୟ'କୁ ଜାଣିବାକୁ ପରାମର୍ଶ ଦେଇଥିଲେ । ପୁନଶ୍ଚ ପୁରାଣର 'କାଳ୍ପନିକତା' ସଂପର୍କରେ ପ୍ରଶ୍ନ କରିଥିଲେ ମାତ୍ର ସମସ୍ୟାର କୌଣସି ସମାଧାନ କରିପାରିନଥିଲେ । ଫକୀରମୋହନଂକ ସମକାଳର ସାହିତ୍ୟ-ସମସ୍ୟା ଏ ଚରିତ୍ର ମାଧ୍ୟମରେ ଉତ୍କୀର୍ଣ୍ଣ ।

ରାମ ନାୟକ - (ପ୍ରାୟଶ୍ଚିତ୍ତ) ଗୋବିନ୍ଦପୁର ଗ୍ରାମର ଜନୈକ ବାରିକ । ଘରେ ଡାଲିଚାଉଳ, ତେଲଲୁଣ ଆଦି ରୋଷେଇ ସରଂଜାମ ରଖିଥାଏ । ବାଟୋଇମାନେ ଦରକାରବେଳେ କିଣନ୍ତି । ସଇତା ଏହାଠାରୁ ଜିନିଷ କିଣିଥିଲେ ଗୋବିନ୍ଦକୁ କଟକ ନେବା ବାଟରେ । ସଇତାକୁ ଦୁଧବିକ୍ରୀରୁ ଏହାର ଅର୍ଥ ପିପାସା ଗତ ତୀବ୍ରତା ଜଣାପଡ଼େ ।

ରାମ ପରିଡ଼ା - (ବଗୁଲା ବଗୁଲୀ) ଘର ଭୁଷଣ୍ଡପୁର । ବିଦିଆ ପାତ୍ର ପୁଅ ସପନା ଯାଙ୍କ ଘରେ କାମପାଇଟି କରେ । ସପନା ଓ ତା'ସ୍ତ୍ରୀ ଚେମୀକୁ ବହୁତ ଭଲପାଆନ୍ତି ଓ ସେ ବଗୁଲା ବଗୁଲୀ ନାଁରେ ଡାକନ୍ତି । ଏଇଥିରୁ 'ବଗଲାବଗୁଲୀ' ନାଁର ଜନ୍ମ ।

ରାମ ବେହେରା - (କମଳା ପ୍ରସାଦ ଗୋରାପ) କମଳା ପ୍ରସାଦ ଗୋରାପର ଖଲାସୀ । ଗୋରାପର ମାଝି ସ୍ୱରୂପ ସହ ମିଶି ଗୋରାପ ମାଲିକ ରାମହରିନାୟକଙ୍କର ବାରହଜାର ଟଂକା ଆତ୍ମସାତ୍ କରି କାଳ୍ପନିକ ଜାହଜଡୁବି କଥା ଘରେ ପ୍ରକାଶ କରିଛି ।

ରାମଭଣ୍ଡାରୀ- (ଛମାଣ ଆଠଗୁଣ୍ଠ)- ମଂଗରାଜଂକ କଥା ପରିବାରର ପରିଚୟ ପ୍ରସଙ୍ଗରେ ଲେଖାଯାଇଚି '' ଉଆସ ମଧ୍ୟରେ ସ୍ତ୍ରୀ ସଂଖ୍ୟା ବେଶି ରାମ ଭଣ୍ଡାରୀକୁ ଛାଡ଼ି ପୁରୁଷ ତୁଣ୍ଡ ପ୍ରାୟ ଶୁଭେନାହିଁ '' । ଏଇ ନାମୋଲ୍ଲେଖ ସୂଚିତ କରୁଚି ସେ ଥିଲା ମଂଗରାଜ ଘର ଅନ୍ୟତମ ସେବକ । ବୁଢ଼ୀମଙ୍ଗଳା ଆସ୍ଥାନ ପଛଗାତକୁ ରାମ ପୋତି ଦେଇଥିବା ସଂକେତିତ ।

ରାମରାମ ଦାସ - (ଗାରୁଡ଼ିମନ୍ତ୍ର) ନବଘନ ଦାସଙ୍କ ମୁହଁରେ ଏହାଙ୍କ ନାମୋଚ୍ଚାରିତ ହୋଇଚି କେବଳ । ମଦନକୁ ସେ ସୂଚନା ଦେଇଚନ୍ତି ଏହି ମଙ୍ଗଳପୁର ଜମିଦାରଙ୍କ ଘରେ ତାର ସମ୍ବନ୍ଧ ସ୍ଥିରହୋଇଚି । କନ୍ୟାଟି ଏହାଙ୍କ ଝିଅ ।

ରାମରାମ ପାତ୍ର - (କାଳିକା ପ୍ରସାଦ ଗୋରାପ) ବାବୁ ରଘୁନାଥ ଦେଙ୍କ ଘରେ ତୁର୍କ ଜଳଦସ୍ୟୁ ବିରୋଧୀ ସଭାରେ ଉପସ୍ଥିତ ଥିବା ବ୍ୟକ୍ତି । ଜଳଦସ୍ୟୁ ବିରୋଧୀ ଆଲୋଚନାରେ ସେ ଅଂଶଗ୍ରହଣ କରିଛନ୍ତି ।

**ରାମରାମ ଭଗତ** - (ମାମୁଁ) ବଙ୍ଗଳା ଖରିଦ ପରିଚ୍ଛେଦରେ ଫକୀରମୋହନ ବଙ୍ଗଳାର ମାଲିକ ଭାବେ ଜନୈକ ତବଲଚି ଟୋକାର କଥା ଉଲ୍ଲେଖକରି ତା'ନାମ ରାମରାମ ଭଗତ ବୋଲି କହିଚନ୍ତି । ଏହାଠାରୁ ରାଘବ ମହାନ୍ତି ବଙ୍ଗଳା କିଣିଛି ।

**ରାମରାମ ଲାଲା** - (ଛମାଣ ଆଠଗୁଣ୍ଠ) 'ବିଶାଳମୂର୍ତ୍ତି, ଆଜାନୁଲମ୍ବିତ ବାହୁ, ଦେହରେ ଢିଲା ହାତ ଆଜାନୁ ଲମ୍ବିତ ଛକଳିଆ ବନ୍ଧ ଲଗା ସ୍ଥାନେ ସ୍ଥାନେ କାଳିଚିହ୍ନିତ ଚପକନ, ମୁଣ୍ଡରେ ହାତେ ଚଉଡ଼ା, ଚବିଶ ହାତ ଲମ୍ବ ଜରିମୁହାଁ ଡାଲିଆ ପାଗବନ୍ଧା, ପାଛୋଡ଼ି ଖଣ୍ଡକ ପଛରୁ ଫେରିଆସି ବାଁକାନି ଡାହାଣ କାଂଧରେ, ଡାହାଣ କାନି ବାଁ କାନ୍ଧରେ ଛାତିରେ ଛକା ପଡ଼ିଛି, ତିନିଫୁଲିଆ ମଣିଆ ବନ୍ଦୀ ଖଦିପିନ୍ଧା, ଗୋଡ଼ରେ ଫୁଲପକା ମରହଟ୍ଟୀ ଯୋତା, କାନରେ ପାହାଡ଼ୀ ଶର କଲମ, ଏକଗୋଲିଆଗାଲେପାନ'ଯେ ଜଣେ ବଡଭାରି ଓକିଲ । 'ଦଣ୍ଡବତ ମଙ୍ଗରାଜେ' କରି ସେ ହାଜତର ମହାବିପଦ ବେଳେ ମଙ୍ଗରାଜଙ୍କୁ ଦମ୍ଭ ଦେଇଥିଲେ । ବିପଦ ଓ ବିକଳରେ ମଙ୍ଗରାଜ ଏହାଙ୍କୁ 'ଧର୍ମର ବାପା' କରିଥିଲେ । ମଙ୍ଗରାଜ ନରହତ୍ୟା ଅଭିଯୋଗରେ ଗିରଫ ହୋଇଥିବାରୁ ଏ ଭାରି ମକଦ୍ଦମାରେ ଟଙ୍କା ଦଶହଜାର ନିଶ୍ଚୟ ଖର୍ଚ୍ଚ ହେବ ଏପରି କହି ନିଜ ନାମରେ ଜମିଦାରୀ କଣ୍ଟକବଲା କରିଦେବାକୁ ସେ ମଙ୍ଗରାଜଙ୍କୁ ପରାମର୍ଶ ଦେଇଥିଲେ । ମଙ୍ଗରାଜ ସବୁ ମାନିଥିଲେ ହେଁ ,ଯେ ତାଙ୍କର ମୁକ୍ତି ପାଇଁ ବିଶେଷ ତତ୍ପରତା ପ୍ରକାଶ କରିନଥିଲେ ।

ରାମ ସାଉ - (ଧୂଳିଆବାବା) ଜନୈକ ଗ୍ରାମବାସୀ । ଭାଇ ଭାଗ ମକଦ୍ଦମା ଜିଣିବାକୁ ମହନ୍ତ ବାନ୍ଦର ଦାସଙ୍କ ସହାୟତା ଲୋଡ଼ିଥିଲା । ତା'ପରେ ଏହାର କୌଣସି ଭୂମିକା ଗଳ୍ପରେ ନାହିଁ ।

**ରାମ ସାହୁ** - (ପ୍ରାୟଶ୍ଚିତ୍ତ) ଗୁଡ଼ିଆ । ସଇତାକୁ ଗୋବିନ୍ଦ କାହିଁକି 'ଡାକ୍ତରଖାନାରେ ବନ୍ଦୀ' ହୋଇଛି ଜାଣିବାକୁ ଚାହିଁ ଖବର ଦେଇଥିଲା ସଦାନନ୍ଦ ଢେର ଟଙ୍କା ବାକି ରଖି ଜିନିଷ ପତ୍ର ନେଇଛି । ଗୋବିନ୍ଦ ଶ୍ୱଶୁରଘରୁ ଅଳଙ୍କାର ଚୋରାଇ ପଳେଇଥିବା କଥା ସଦାନନ୍ଦ କହୁଥିବାର ମଧ୍ୟ ସେ ସୂଚିତ କରିଥିଲା । ସଇତାକୁ କ୍ଷୁଧିତ ଜାଣି ଯତ୍ନରେ ଖାଇବାକୁ ଦେଇଥିଲେ ।

**ରାମହରି ନାୟକ** - (କମଳା ପ୍ରସାଦ ଗୋରାପ) କମଳା ପ୍ରସାଦ ଗୋରାପର ମାଲିକ । ଏହାଙ୍କର ଗୋଟିଏ ଗୋରାପ ଓ ତିନୋଟି ସୁଲୁପ ଚାଲେ । କମଳା ପ୍ରସାଦ ମାନ୍ଦ୍ରାଜରୁ ବାଣିଜ୍ୟ ଫେରନ୍ତା ବାଟରେ ବୁଡ଼ି ଯାଇଥିବାର କାଳ୍ପନିକ କାହାଣୀ ବୟାନକରି କୋଡ଼ିଏ ବରଷର ପୁରୁଣା ମାଝି ସ୍ୱରୂପ ମାଝି ଏହାଙ୍କର ବାରହଜାର ଟଙ୍କା ଖଲାସିମାନଙ୍କ ସହ ମିଶି ବାଣ୍ଟି ନେଇଥିଲେ । ଶେଷରେ ଜାହାଜ ଫେରି ପାଇଲେ ଓ ଟଙ୍କା ମଧ୍ୟ ଉଦ୍ଧାର ହେଲା । ଖଲାସୀଙ୍କର ଷଡ଼ଯନ୍ତ୍ର ଧରାପଡ଼ିଲା ଏବଂ ସେମାନେ ଜେଲଗଲେ ।

**ରାମହରି ପଟ୍ଟନାୟକ** - (ସୁନାବୋହୂ) ପୁଲିସ ଦାରୋଗା । ସାଲେପୁର ପ୍ରଗଣା ଗୋପିନାଥପୁର ଗାଁରେ ଜଣେ ଜଣାଶୁଣା ଲୋକ । ଆଖପାଖ ଗାଁରୁ ଲୋକେ ତାଙ୍କର ପରାମର୍ଶ

ଚାହାନ୍ତି । ପଞ୍ଚାୟତ ଲୋକେ ତାଙ୍କର ଆଗମନର ଅପେକ୍ଷା ରଖନ୍ତି । ମୋଟ ଉପରେ ଜଣେ ପ୍ରଭାବଶାଳୀ ବ୍ୟକ୍ତି । ପେନ୍‌ସନ୍ ପାଇ ପାଞ୍ଚବର୍ଷ ବଞ୍ଚିଥିଲେ । ଦରମା ଓ ଉପୁରି ମିଶାଇ ବେଶ୍ ରୋଜଗାର ଥିଲା । ମାତ୍ର ସେ ଥିଲେ ସାହାଖର୍ଚ୍ଚୀ । ତେଣୁ ମଲାବେଳେ ସଞ୍ଚୟ କିଛି ନ ଥିଲା । ତାଙ୍କ ମୃତ୍ୟୁ ବେଳେ ପୁଅ ଶିବସୁନ୍ଦରର ବୟସ ଦଶବର୍ଷ ଓ ଝିଅ ଚମ୍ପାକୁ ପାଞ୍ଚବର୍ଷ ହୋଇଥିଲା ।

**ରାମହରି ମହାନ୍ତି** - (ପ୍ରାୟଶ୍ଚିତ୍ତ) ସମସରପୁର ଉଆସର ଶିଠକରଣ । ଇନ୍ଦୁର ମୃତ୍ୟୁ ସଂବାଦ ପ୍ରାପ୍ତିରେ ସଂକର୍ଷଣ ମହାନ୍ତି ଯେତେବେଳେ ଦାରୁଣ ମାନସିକ କଷ୍ଟରେ ଥିଲେ, ଯେ ସେତେବେଳେ ତାଙ୍କ ଭୋଜନାଦିର ଯତ୍ନ ନେଇଥିଲେ ।

**ରାମା ତନ୍ତୀ** - (ଛମାଣ ଆଠଗୁଣ୍ଠ) ପୂର୍ବ ରାତିରେ ବୁଢ଼ୀ ମଙ୍ଗଳା ସ୍ୱୟଂ ଆପଣା ଆସ୍ଥାନକୁ ବିଜେ ହୋଇଥିବା କଥାର ଅନ୍ୟତମ ପ୍ରମାଣ ଦେବାକୁ ଏ ଚରିତ୍ରଟିର ଆଗମନ ଘଟିଛି । ସକାଳେ ବାଘ ଖୋଜ୍ ଦେଖିଥିବା ସେ ପ୍ରକାଶ କରିଛି । ଲୌକିକ ମାନସିକତାର ପରିପ୍ରକାଶ ଭିତ୍ତିରେ ଏଇ ଚରିତ୍ରଟିର ସୃଷ୍ଟି ।

**ରାମା ବାରିକ** - (ପୁନଃ ମୂଁଷିକୋଭବ) ମକ୍ରାମପୁରର ଭଣ୍ଡାରି । କନେଷ୍ଟବଳ କିଣାରାମ ଘରେ କାମ କରୁଥିଲା । ଜାତି ପରମାଣିକ । କିଣାରାମ ନାପିତ ବୋଲି ସୂଚିତ କରି ତା' ଘରେ କାମ କଲେ ବାଛନ୍ଦ ହେବ ବୋଲି ଜଣାଇବାରୁ ଯେ କାମ କଲା ନାହିଁ ଓ କିଣାରାମର କ୍ରୋଧ ଦାଣ୍ଡରେ ପଡ଼ିଥିଲା । ରାମା ଘରେ ଲୁଣ ମାରେ ବୋଲି କିଣା ତାକୁ ଗିରଫ କଲା ମାତ୍ର ରାମା ବାରିକ ନିର୍ଦ୍ଦୋଷରେ ଖଲାସ ହୋଇ ଆସିଥିଲା ।

**ରାମା ଭଣ୍ଡାରି** - (କମଳା ପ୍ରସାଦ ଗୋରାପ) କମଳା ପ୍ରସାଦର ମାଲିକ ରାମହରି ବାବୁଙ୍କ ଘରେ ଭଣ୍ଡାରି । ଏ କମଳା ପ୍ରସାଦର ମାଝିକୁ ସାଢ଼େ ଦଶଟଙ୍କା 'ବଟମ୍' ଦେଇଥିଲା ।

**ରାମା ଭିଣା** - (ରାଣ୍ଡୀପୁଅ ଅନନ୍ତା) ଜନୈକ ଗ୍ରାମବାସୀ । ଅନନ୍ତା ଚରିତ୍ରର ମହତ୍ତ୍ୱ ଦର୍ଶାଇବାକୁ ଏ ଚରିତ୍ରର ଅବତାରଣା ଏହାର ବାପା 'ବାଡିରେ' ମରିଥିବାରୁ କେହି ଉଠାଇବାକୁ ରାଜି ନଥିଲେ । ଅନନ୍ତା ଏକଲା ହେଁସ ମିଶା କରି ମଡ଼ାକୁ କାନ୍ଧେଇଲା । ଅନ୍ଧାର ରାତି...ଅଧକୋଶ ଦୂରରେ ମଶାଣିରେ ମଡ଼ାଟା ଫୋପାଡ଼ି ଦେଇ ନଈରେ ବୁଡ଼ି ପଡ଼ି ବାହାରି ଅଇଲା ।'

**ରାମ ବଳିଆର ସିଂ** - (ଲଛମା) ରାଇବଣିଆ ଦୁର୍ଗର ନାମକରଣ ପ୍ରସଙ୍ଗରେ ଫକୀରମୋହନ ଏକ ପାଦଟୀକା ମାଧ୍ୟମରେ ଜଣାଇଛନ୍ତି । ରାଇବଣିଆ ଦୁର୍ଗର ସ୍ଥାପନକର୍ତ୍ତାଙ୍କ ଉପାଧି ଥିଲା ରାୟ ବଳିଆର ସିଂ । ତାଙ୍କରି ନାମ ଅନୁସାରେ ଦୁର୍ଗର ନାମ ହେଲା ରାୟ ବଳିଆର ଓ କାଳକ୍ରମେ ଏହା ରାଇବଣିଆ ଭାବେ ପରିଚିତ ହେଲା ।

**ରୁକୁଣୀ ମା' ବୋହୂ** - (ଛମାଣ ଆଠଗୁଣ୍ଠ) ସାରିଆ, ଭଗିଆଙ୍କ ସୁଖମୟ ଦାମ୍ପତ୍ୟ ଜୀବନର ଚିତ୍ରଣ ବେଳେ ଏମାନଙ୍କ ଏକ ପ୍ରଚ୍ଛନ୍ନ ଅଥଚ ଗଭୀର ଦୁଃଖର ସୂଚନା ଦେବାକୁ ଯାଇ ଏ ଚରିତ୍ରଟିର ନାମୋଲ୍ଲେଖ ଘଟିଛି । ଏହାରି ପିଲାର ଷଠି ଘରକୁ ଯାଇ ସାରିଆ ପିଲାଟିକୁ

ଦେଖି ଚାଲି ଆସିଲା । ଚକୁଳି ବଣ୍ଟା ଯାଏ ରହିଲା ନାହିଁ । ଏହାରି ମାଧ୍ୟମରେ ବ୍ୟଞ୍ଜିତ ହୋଇଛି ସାରିଆ, ଭଗିଆଙ୍କ ନିଃସନ୍ତାନତ୍ୱ ।

**ରେବତୀ** - (ରେବତୀ) ନାୟିକା । ପିତା ଶ୍ୟାମବନ୍ଧୁ ମହାନ୍ତି କଟକ ଜିଲ୍ଲା ଘାଟପୁର ଗାଁରେ ଜମିଦାରଙ୍କ 'କରଣ' । ବୟସ ଦଶବର୍ଷ । ବାପାଙ୍କଠାରୁ ଶୁଣି ଓ ଶିଖି ସେ ମୁହେଁ ମୁହେଁ ଭଜନମାନ ବୋଲେ । ପାଠ ପଢ଼ିବାରେ ଆଗ୍ରହ ଖୁବ୍ ବେଶି । ସ୍କୁଲ ଶିକ୍ଷକ ବାସୁଦେବଙ୍କ ଉପରେ ଏହାର ଶିକ୍ଷାଦାୟିତ୍ୱ ବାପା ଶ୍ୟାମବନ୍ଧୁ ନ୍ୟସ୍ତ କରିଥିଲେ । ବାସୁଦେବ ଓ ରେବତୀର ପରସ୍ପର ଦୁର୍ବଳତା ଖୁବ୍ ଧୀର ଓ ଅଥଚ ନିଶ୍ଚିତ ରୂପରେ ପ୍ରକାଶିତ ହେଉଥିଲା । ସୀତାନାଥ ବାବୁଙ୍କ ପ୍ରଥମ ପାଠ ବହି ବାସୁଦେବ ଆଣି ଦେବାଠାରୁ ପାଞ୍ଚଦିନପାଇଁ ଅନୁପସ୍ଥିତ ରହି ପିଲାଙ୍କୁ ନେଇ ଦିପୋଟି ସବ୍‌ଇନ୍‌ସପେକ୍ଟରଙ୍କ ପାଖକୁ ଯିବା ଭିତରେ ଏହି ଦୁର୍ବଳତା ଏକ ଅନୁପମ ରୂପ ପାଇ ସାରିଥିଲା । ରେବତୀ ବାସୁଦେବର ବିବାହ ପାଇଁ ମଧ୍ୟ ଶ୍ୟାମବନ୍ଧୁଙ୍କ ପରିବାର ସ୍ଥିର କରି ସାରିଥିଲେ । ଅଥଚ ବାସୁଦେବର ଅକାଳ ମୃତ୍ୟୁ ଘଟିଥିଲା । ରେବତୀ ଅତ୍ୟନ୍ତ ଏକାକୀ ହୋଇ ପଡ଼ିଥିଲେ । ବାପାଙ୍କ ମୃତ୍ୟୁ ପରେ ସାହାଭରସା ଥିଲା ବାସୁ । ତା'ପରେ ରେବତୀ ହୋଇ ପଡ଼ିଥିଲା ନିରାଶ୍ରୟା । ବାସୁର ମୃତ୍ୟୁ ତାଙ୍କୁ ଏପରି ଆଘାତ ଦେଇଥିଲା ଯେ ସେ ରୋଗଗ୍ରସ୍ତ ହୋଇପଡ଼ିଥିଲା ଓ ମୃତ୍ୟୁବରଣ କରିଥିଲା । ଚରିତ୍ରଟି ଭିତରେ ଦ୍ୟୋତିତ ହୋଇଛି ଶିକ୍ଷାଜନିତ ଆଗ୍ରହ, ପରିବେଶଗତ ପ୍ରତିକୂଳତା ଓ ତା'ର ଚରମ ଅସହାୟତା ।

**ରେଭିନୀ ସାହେବ** - (ବାଲେଶ୍ୱରୀ ରାହାଜାନୀ) ବାଲେଶ୍ୱର ଜିଲ୍ଲାର ଆସିଷ୍ଟାଣ୍ଟ ମ୍ୟାନେଜର । ପରେ ହାଇକୋର୍ଟର ଜର୍ଜ । ପାଲିଙ୍କି ଡାକରେ କଲିକତା ଯିବାବେଳେ ବସ୍ତା ଓ ହଳଦୀଗଦା ମଧ୍ୟରେ ଡକାୟତ ମାନେ ତାଙ୍କର ମାଲମତା ଲୁଟିନେଇ ଥିଲେ । ଜଣେ ଇଂରେଜ ଉପରେ ଡକାୟତି ହେବାକୁ ଅବସ୍ଥା ଗୁରୁତର ବୋଲି ଗ୍ରହଣ କରାଗଲା ଓ ବ୍ୟାପକ ଧରପଗଡ଼ ହେଲା । ଏହାଙ୍କ ଡକାୟତି ଘଟଣା ଗଳ୍ପର ଘଟଣା ସ୍ରୋତର ଆଦ୍ୟ ଘଟଣା ।

**ରୋକ ଶତ** - (ଛମାଣ ଆଠଗୁଣ୍ଠ) ଜଣେ ବାଇଜୀ । ସେଖ୍ ଦିଲ୍‌ଦାର ମିଆଁଙ୍କ ମେହେଫିଲ୍ ଏହାଙ୍କୁ ଦେବା ପାଇଁ ଶହେ ଟଙ୍କା ଓ ଏହାଙ୍କ ଆନୁସଙ୍ଗିକ ଖର୍ଚ୍ଚ ଶହେ ଟଙ୍କା ନ ପାଇ ଝାଉଁଳି ପଡ଼ିଥିଲା ।

**ରୋଷେୟା ବ୍ରାହ୍ମଣ** - (ପେଟେଣ୍ଟ ମେଡ଼ିସିନ) ଚନ୍ଦ୍ରମଣି ବାବୁଙ୍କ ଘରର ପାଚକ । ସାଆନ୍ତାଣୀ ସୁଲୋଚନାଙ୍କ ବ୍ୟକ୍ତିତ୍ୱ ସଂପର୍କରେ ପାଠକମାନଙ୍କୁ ସୂଚନା ଦେବାପାଇଁ ଏହାର ଆଗମନ । ଚନ୍ଦ୍ରମଣିଙ୍କ ଧର୍ମାଚାର ଓ ଉପବାସପାଇଁ ସୁଲୋଚନା ମଧ୍ୟ ଉପବାସ କରିବେ କହି ରୋଷେଇ ବନ୍ଦପାଇଁ ନିର୍ଦ୍ଦେଶ ଦେବାକୁ ଯେ ସାନ୍ତାଆଣୀ 'ଅଦ୍ଭୁତ ସ୍ତ୍ରୀ' ବୋଲି ବିଚାରିଛି ଓ ଏହାରି ସୁଲୋଚନା ସଂପର୍କୀୟ ବିଚାର ଏ ଚରିତ୍ରକୁ ମହତ୍ୱପୂର୍ଣ୍ଣ କରିଦେଇଛି ।

**ଲକ୍ଷ୍ମଣ ମିଶ୍ର** - (ଅଧର୍ମ ବିତ୍ତ) ଦିବାକର ଦ୍ୱିବେଦୀଙ୍କ ଭଣଜା । ଏନଟ୍ରାନ୍ସ୍ ପାଶ୍ । ମାଇନର ସ୍କୁଲ ହେଡ୍ ମାଷ୍ଟର । ବୁଦ୍ଧିମାନ । ଏହାଙ୍କ ପରାମର୍ଶରେ ନରହରିପୁର ଶାସନର ବ୍ରାହ୍ମଣମାନେ କୁବେର ସାହୁର ସୁଧଚାଲରୁ ମୁକୁଳିବାର ଉପାୟ ହାସଲ କରିଛନ୍ତି ।

**ଲଛମନ୍‌ଜୀ** - (ଲଛମା) ଜଣେ ବର୍ଗୀ ମନ୍‌ସବଦାର । ଫୁଲଓୟାର ଯୁଦ୍ଧ ବେଳେ ଦୁଇ ହଜାର ସୈନ୍ୟଧରି ସେ ମୀରଜାଫର ସହ ଯୁଦ୍ଧ କରିଥିଲେ ଓ ଆପଣା କପଟତାରେ ସଫଳ ହୋଇଥିଲେ ।

**ଲଛମନ ଦାସ** - (ମାଧ ମହାନ୍ତିଙ୍କ କନ୍ୟାସୁନା) ମଧୁପୁର ଗାଁର ଗୋପାଳଜୀଉ ମଠର ମହନ୍ତ । ଦାତା, ଦୟାଳୁ, ଚରିତ୍ରବାନ୍ ମାତ୍ର ଗଞ୍ଜେଇ ଭକ୍ତ । ଯାଙ୍କ ମଠର କୋଠ ଚାକର ବିନୋଦିଆର ବିବାହ ଦାୟିତ୍ୱ ଇଏ ନେଇଛନ୍ତି ଓ ମାଧମହାନ୍ତିର ସର୍ବଗୁଣ ସଂପନ୍ନା ଝିଅ ମାଳତୀ ସହ ଚତୁରତାର ସହ ବିନା କନ୍ୟାସୁନାରେ କରାଇ ଦେଇଛନ୍ତି । କନ୍ୟାସୁନା ଲାଭରୁ ବଂଚିତ ମାଧମହାନ୍ତିର ଫେରାଦ ଶୁଣି ଗାଁବାଲାଙ୍କ ସପକ୍ଷରେ ରାୟ ଦେଇଥିବାରୁ କୃପଣ, କନ୍ୟାସୁନା ଲୋଭୀ ମାଧମହାନ୍ତି ରାଗରେ ଘରେ କବାଟ କିଳି ରହି ପଡ଼ି ପଡ଼ି ମରିଯାଇଛି ।

**ଲଛମନ ଭଗତ** - (ପ୍ରାୟଶ୍ଚିତ୍ତ) ଦଶଗ୍ରାମୀ ଜମିଦାର ଉଆସର କାରବାରି ମହାଜନ । ଅସୁସ୍ଥତାରୁ ଆରୋଗ୍ୟ ଲାଭ କରି ଗୋବିନ୍ଦ କିଛି ଗହଣା ଦେଇ ସଇତାକୁ ପଠାଇ ଏହାଠାରୁ ପାଞ୍ଚହଜାର ଟଙ୍କା ମୂଲ୍ୟର ନୋଟ ଆଉ ମୋହର ମଗାଇଥିଲେ । ଭଗତ ମଧ୍ୟ ପରଦିନ ଆସି ସମବେଦନା ଜଣାଇ ଟଙ୍କା ଗଣିଦେଇ ଚାଲିଯାଇଥିଲେ ।

**ଲଛମା** - (ଲଛମା) ଉପନ୍ୟାସର ନାୟିକା । ଘର ସିଂହାନ ଗ୍ରାମ,ଜିଲ୍ଲା ରୋହିଲା ଖଣ୍ଡ, ଜାତିରେ କ୍ଷତ୍ରିୟ । ପିତା ଧେଓଁକଳ ସିଂ ଜମିଦାରୀ, ସ୍ୱାମୀ-ବାଦଲ ସିଂ । ଜଗନ୍ନାଥ ଦର୍ଶନପାଇଁ ସପରିବାର ଯିବା ପଥରେ ବର୍ଗୀମାନଙ୍କଦ୍ୱାରା ଆକ୍ରମଣ ଓ ସମୟକ୍ରମେ ରାଇବଣିଆ ଅଧିଶ୍ୱର ମାନଧାତାଙ୍କ ପାଖରେ ଆଶ୍ରିତ । ମରହଟ୍ଟାମାନଙ୍କର ରାଇବଣିଆ ଦୁର୍ଗ ଆକ୍ରମଣ ଅବସରରେ ମହାଦେବୀ କର୍ତ୍ତୃକ ପାଇକ ଗାଁ ମଧୁପୁରକୁ ପ୍ରେରଣ । ଅଠରତମ ଅଧ୍ୟାୟରେ ଯେଉଁ ପାନରାର ବିବରଣୀ ଅଛି ତାହା ଲଛମାର ଛଦ୍ମରୂପ । ପ୍ରତିହିଂସା ତାକୁ ସେପରି କରିଥିଲା । ଏହାର ପରିଚୟ ଓ ଆଚରଣ ସମଗ୍ର ଉପନ୍ୟାସକୁ ନାଟକୀୟ କରିବାରେ ସାହାଯ୍ୟ କରିଛି । ଏ ମଧ୍ୟ ଭାସ୍କରଙ୍କ ଅଙ୍ଗରକ୍ଷୀ 'ଅଶ୍ୱସାମଲ' ଭାବେ ଉପନ୍ୟାସର ପରିଣତି ବେଳେ ସନ୍ଧିସ୍ଥଳକୁ ଯାତ୍ରା କରିଛି ଓ ଭାସ୍କର - ବିନାଶର କାରଣ ହୋଇ ନିଜର ପ୍ରତିଶୋଧ ପରାୟଣତା ଓ ସାହସର ପରିଚୟ ଦେଇଛି । ଉପନ୍ୟାସରେ ଏହାର ପ୍ରତ୍ୟକ୍ଷ ଭୂମିକା ସ୍ୱଳ୍ପ । ମାତ୍ର ଏହାକୁ କେନ୍ଦ୍ରକରି ବହୁ ପରିଚ୍ଛେଦ କଳ୍ପିତ । ଲଛମା ଚରିତ୍ରଟିର ବିକାଶ ଏକମୁଖୀ ।

**ଲମ୍ବୋଦର ଦାସ** - (ପ୍ରାୟଶ୍ଚିତ୍ତ) ରାଜୀବଲୋଚନ 'ଭୋଜିସଭା'ରେ ଗୋବିନ୍ଦକୁ ସଭାପତି କରାଯିବା ପ୍ରସ୍ତାବକୁ 'second' ଅର୍ଥାତ୍ 'ଦ୍ୱିତୀୟ' କରିଥିବା ବ୍ୟକ୍ତି ।

**ଲଳିତା** - (ମାମୁ) କାକଟପୁର ମୌଜା ନିବାସୀ ବିଶୁ ମହାନ୍ତିଙ୍କ କନ୍ୟା ଲଳିତା । ଦାଶରଥି ଦାସଙ୍କ ବଡ଼ ପୁଅ ବାନାବରଙ୍କ ପତ୍ନୀ । ଜଣେ ଆଦର୍ଶ ବୋହୂ ଭାବେ ଏହାଙ୍କ ବ୍ୟକ୍ତିତ୍ୱକୁ ଚିତ୍ରିତ କରାଯାଇଛି । ଯାଆ ବିଶାଖାର ଅଇଁଠା ବାସନ ଉଠାଇ ଅକୁଣ୍ଠ ଧୋଇବା ଭିତରେ ଏହାଙ୍କ ଚରିତ୍ରର ମହତ୍ୱ ପ୍ରକାଶିତ । ଏ ଚରିତ୍ର ଖୁବ୍ କମ୍ ସମୟ ପାଇଁ ଉପନ୍ୟାସକୁ ଆସିଚି । ବିଶାଖା ଚରିତ୍ରର ସମ୍ପୂର୍ଣ୍ଣ ପରିପନ୍ଥୀ ଭାବେ ଏହାର ଗୁଣାବଳୀର ଚିତ୍ରଣ ଘଟିଛି ।

**ଲଳିତା ଦାସ** - (ଛମାଣ ଆଠଗୁଣ୍ଠ) ବାବାଜୀ । ମଙ୍ଗୁଆ ମୁହଁରେ ଏହାଙ୍କ ନାମ ପ୍ରଥମେ ଶୁଣାଯାଇଥିଲା । ବୃନ୍ଦାବନ ଯିବା ନାମରେ ମଙ୍ଗୁଆ ଏହାଙ୍କ ସହ ଘର ଛାଡ଼ିଥିଲେ । ଉପନ୍ୟାସର ପରିଣତି ବେଳେ ଏହି ବାବାଜୀ ଗୋବିନ୍ଦପୁର ଭାଗବତ ଘରେ ମଠ କରିଥିଲେ । ରୂପରେ ସେ ଥିଲେ, 'ବୟସ ଅଧୋଡ଼, ବର୍ଣ୍ଣ ଶ୍ୟାମଳ, ଦେହଟି ଥାକୁଲ ଥୁକୁଲ, ମୁଣ୍ଡଟି ଲଣ୍ଡା - ମଝିରେ ଟରଭୁଜ ଡେମ୍ଫ ପରି ଚୁଟ୍କି, ବେକରେ ମୋଟା ମୋଟା ତୁଳସୀ କଣ୍ଠି ପାଞ୍ଚ ଫେରା । ନାସାର୍ଦ୍ଧରୁ କେଶ ପର୍ଯ୍ୟନ୍ତ ଚିତା ଆଉ ଡେଡ଼ଲେଟର ଅଫିସରୁ ବେରିଂ ଚିଠି ବାହୁଡ଼ିଲା ପରି ସର୍ବାଙ୍ଗରେ ଛାପା । ପରିଧାନ କୌପୀନ, ତାହା ଉପରେ ବହିର୍ବାସ, ପିଠିରେ ନାମାବଳୀ, ହାତରେ ଝୋଲି ।'XX ଏହାଙ୍କ ସହିତ ମଙ୍ଗୁଆ ଗୋବିନ୍ଦପୁର ଉଆସରୁ ଉଭାନ ହୋଇ ଯାଇଥିଲା ।

**ଲଳିତା ଦାସ** - (ଅଧର୍ମ ବିତ୍ତ) କଟକଠାରୁ ଦୁଇକୋଶ ତଳକୁ ଗୋବିନ୍ଦପୁର ଗାଁର ଗୋପାଳଜୀ ମଠର ବୁଢ଼ା ମହନ୍ତ । ବିଦ୍ୟାଧରଙ୍କ ନାଆ ଦୁର୍ଘଟଣା ପରେ ପାଣିରୁ ଉଠାଇ ଯତ୍ନରେ ବଞ୍ଚାଇଛନ୍ତି ।

**ଲଳିତା ଦେଈ** - (ପ୍ରାୟଶ୍ଚିତ୍ତ) ସଂକର୍ଷଣ ମହାନ୍ତିଙ୍କ ସ୍ୱର୍ଗତା ପତ୍ନୀ । ଏହାଙ୍କ ସଂପର୍କରେ ଔପନ୍ୟାସିକ ନୀରବ ।

**ଶଙ୍କର ବେହେରା** - (କାଳିକା ପ୍ରସାଦ ଗୋରାପ) କାଳିକା ପ୍ରସାଦ ଗୋରାପର ଖଲାସୀମାନଙ୍କର ମିର୍ଦ୍ଧା ଅର୍ଥାତ୍ ସର୍ଦ୍ଦାର ଓ ଗୋଦାମ ରକ୍ଷକ । 'କାଳିକାପ୍ରସାଦ'ରେ ଯାଇ ତୁର୍କ ଜଳଦସ୍ୟୁ କବଳରେ ପଡ଼ି ମାଡ଼ ଖାଇ ମଲା ।

**ଶଙ୍କରା** - (ମାଧ ମହାନ୍ତିଙ୍କ କନ୍ୟାସୁନା) ମହନ୍ତଙ୍କ ପାଖଲୋକ ।

**ଶଙ୍କରା ଜେଜୀ** - (ମାମୁ) ଅପର ସ୍ତ୍ରୀ ଲୋକମାନଙ୍କୁ ପଞ୍ଚଦଶ ପରିଚ୍ଛେଦରେ ବିଶାଖା ସଂପର୍କରେ କିଛି ଆଲୋଚନା ନ କରିବାକୁ ପ୍ରବର୍ତ୍ତାଇଛି ।

**ଶକୁ ମଳିକ** - (ପୁନର୍ମୂଷିକୋଭବ) ମକ୍ରାମପୁର ଗାଁର ବୁଢ଼ା ଦିଗବାର । ରାମା ବାରିକକୁ ଇଏ ବାନ୍ଧି ନେଇଥିଲେ । କନେଷ୍ଟବଳ କିଣା ରାମସିଂ ଆଦେଶରେ । ଏହାରି ଉପସ୍ଥିତିରେ ପୁରୋହିତ ରଥେ କିଣାରାମଙ୍କୁ ପାଣି ଢାଳେ ଗୋଡ଼ ଧୋଇବାକୁ ଆଣିଦେବାକୁ କହିଥିବା ଯୋଗୁ କିଣାରାମ ଅପମାନିତ ।

**ଶାମ ସାଉ** - (ଧୂଳିଆ ବାବା) ଜନୈକ ଗ୍ରାମବାସୀ । ଭାଇ ରାମ ସାଉ ସହ ସମ୍ପତ୍ତିବାଣ୍ଟ ମକଦ୍ଦମା ଚାଲିଥିଲା । ରାମ ସାଉ ମହନ୍ତ ବାନ୍ଦର ଦାସଙ୍କ ଆଶୀର୍ବାଦ ଆଶା କରିବା ଓ ତାଙ୍କ

ମହିମାବଳରେ ଚିଲମନିଆଁ କଥା କହିବା ଶୁଣି ରାମ ସାଉ ପ୍ରଭାବିତ ହୋଇଥିଲେ । ପ୍ରଥମରୁ ମହନ୍ତଙ୍କ ମହିମାକୁ ଅସ୍ୱୀକାର କରିଥିଲେ ବି ପରେ ତାଙ୍କ କଥାନୁଯାୟୀ ପରିଚାଳିତ ହୋଇଥିଲେ । ସେ ହିଁ ସର୍ବପ୍ରଥମେ ଧୂନିଦେବତା ରୂପଧରି ବିଜେ ହେଲେଣି ବୋଲି ସର୍ବପ୍ରଥମେ ଘୋଷଣା କରିଥିଲେ । ମହନ୍ତଙ୍କ ଛଦ୍ମ ମହିମାର ସ୍ୱରୂପ ଉଦ୍‌ଘାଟନପାଇଁ ଏ ଚରିତ୍ର ଥିଲା ଅନ୍ୟତମ ସହାୟକ ଚରିତ୍ର ।

**ଶାମ ସାମଲ** - (ମାମୁ) ସାଧାରଣ ଗୃହସ୍ଥ । ହରିବୋଲ ବାରିକ ସହ ତା'ର କଥୋପକଥନ ଛଳରେ ଉତ୍ତରୟବଂଶର ଆର୍ଥିକ ଦୁଃସ୍ଥିତି ପ୍ରତିଭାତ ।

**ଶାରଦା ପ୍ରସାଦ ଘୋଷ** - (ବାଲେଶ୍ୱରୀ ରାହାମନୀ) ବାଲେଶ୍ୱର ସଦରଥାନା ଇନ୍‌ସପେକ୍ଟର । ଜଣେ ସୁନିପୁଣ କର୍ମଚାରୀ ବୋଲି ଉପରିସ୍ଥ କର୍ମଚାରୀମାନଙ୍କ ବିଶ୍ୱାସ ଥିଲା । ଡକାୟତ ଦଳର ସଂଧାନ ଓ ଗ୍ରେପ୍ତାର ପାଇଁ ସେ ନିଯୁକ୍ତ ହୋଇଥିଲେ । ଏହାଙ୍କ ଚାତୁରୀ ଓ ପ୍ରତ୍ୟୁତ୍ପନ୍ନମତିତା ଜ୍ୟୋତିଷଭାବେ ଡକାୟତ ସର୍ଦ୍ଦାର ସହ କଥୋପକଥନ ମାଧ୍ୟମରେ ବର୍ଣ୍ଣିତ । ଏହାଙ୍କ ଉଦ୍‌ଯୋଗ ଫଳରେ ଡକାୟତମାନେ ଧରା ପଡ଼ିଥିଲେ ।

**ଶିଉଶଙ୍କର ମାଲବୀର** - (ଲଛମା) ମହାରାଷ୍ଟ୍ର ବ୍ରାହ୍ମଣ, ପଣ୍ଡିତ । କାବ୍ୟ, ନାଟକ, ପ୍ରାଚୀନ ଆର୍ଯ୍ୟ ଷଟଦର୍ଶନ ଶାସ୍ତ୍ର କଣ୍ଠସ୍ଥ । ଦୌତ୍ୟ ନିପୁଣ । ମେଢାର ଦରବାରରୁ ଉତ୍କଳକୁ ଆସି ଦଶପଲ୍ଲା, ବାଙ୍କୀ,ତିଗିରିଆ ନୀଳଗିରି ପ୍ରଭୃତି ଦୁର୍ଗପତିଙ୍କୁ ଆପଣା ବାକ୍‌ଚାତୁରୀରେ ମୁଗ୍ଧ କରି ମରହଟ୍ଟା ସହ ସନ୍ଧି କରାଇ ପାରିଥିଲେ ।

**ଶିଉ ଶରଣ ଭଗତ** - (ମାମୁ) ବକ୍‌ସି ବଜାରର ଜନୈକ ମହାଜନ । ରାଘବ ମହାନ୍ତିଙ୍କ କପଟରେ ଯେଉଁ ବଙ୍ଗଳା ତୁଳସୀପୁର ପରେ ପ୍ରଭୁଦୟାଲ କିଣାଇଥିଲେ, ସେ ବଂଗଳା ଏ ମହାଜନର ।

**ଶିବପ୍ରସାଦ ଚୌଧୁରୀ** - (କାଳିକା ପ୍ରସାଦ ଗୋରାପ) ଲକ୍ଷ୍ମୀପ୍ରସାଦ ଗୋରାପର ମାଲିକ । ବାବୁ ରଘୁନାଥ ଦେବଙ୍କ ଘରେ ତୁର୍କ ଜଳଦସ୍ୟୁ ବିରୋଧୀ ସଭାରେ ଇଏ ଉପସ୍ଥିତ ଥିଲେ ।

**ଶିବସୁନ୍ଦର** - (ସୁନାବୋହୂ) ନାୟକ ରାମହରି ପଟ୍ଟନାୟକଙ୍କ ପୁଅ । ବାପ ମଲାବେଳକୁ ବୟସ ଦଶ । ମାଆଦ୍ୱାରା ମଣିଷ । କଚେରୀରେ କିରାଣୀ ମାତୃଭକ୍ତ । ଭଉଣୀ ଚମ୍ପାକୁ ଅଙ୍କ ପାଠ ପଢ଼ାଇଥିଲେ । ସ୍ତ୍ରୀ ଅଳସୁଆ, କଳିହୁଡ଼ି । ଏହାର ଏପରି ଗୁଣ ଛଡ଼ାଇବାକୁ ଅନୀଆଇ ଓ ଚମ୍ପାର ସହାୟତାରେ ଦ୍ୱିତୀୟ ବିବାହର ନାଟକ ଓ ତାହା ସଫଳ ହୋଇଥିଲା ।

**ଶିବୁ ପଣ୍ଡିତେ** - (ଛମାଣ ଆଠଗୁଣ୍ଠ) ମଙ୍ଗରାଜଙ୍କ ତଳି ସଂଗ୍ରହ ଅଭିଯାନ ବେଳେ ପଣ୍ଡିତେ ପୋଖରିପାଣି ବାହାରିଥିଲେ । ସାଆନ୍ତଙ୍କୁ ଦେଖି ଆଶୀର୍ବଚନ ଦେବା ଓ ମଂଗରାଜ ଖଣ୍ଡେ ବାଟ ଯିବା ପରେ ପଞ୍ଚତନ୍ତ୍ରର ଆଦ୍ୟ ପ୍ରାତେରବା.... ଶ୍ଳୋକଟି ପଢ଼ି ମଂଗରାଜଙ୍କୁ ସକାକୁ

ଦେଖିବା ଯେ ଅଶୁଭ ସୂଚକ ଜ୍ଞାନ କରାଯାଉଥିଲା ତାହା ସୂଚାଇଛନ୍ତି ।

**ଶୁକ୍ରି** - (ଗାରୁଡ଼ିମନ୍ତ୍ର) ଜମିଦାର ଗୋଲାପଲୋଚନ ପଟ୍ଟନାୟକ ଉଆସର ଖାସ୍ ପୋଇଲୀ । ସାନସା'ନ୍ତ ଗଳ୍ପ ରଚନାତ୍ମକ ମଦନମୋହନର ଖାସ୍ ପୋଇଲୀ । ମୋହିନୀକୁ ଛଦ୍ମ ସାପ କାମୁଡ଼ିବା ଘଟଣାରେ ମଦନକୁ ସହାୟତା କରିଛି ଏ ଦାସୀ । ପୂର୍ବରୁ ପଦୀ ମନରେ ମଧ୍ୟ ଭୟର ସଞ୍ଚାର କରାଇପାରିଛି ।

**ଶୁକ୍ରିଆ ମୁଖୀ** - (ପାଠୋଇ ବୋହୂ) ଜଣେ ନାମ ଡାକ ଗୁଣିଆ । 'ଲୋକଟା ବାଙ୍ଗରା, ଥୋଥମା ଥୁଥମୀ, ବାହୁ ଯୋଡ଼ାକ ଦେହକୁ ଚାହିଁ ବେଶି ଲମ୍ବା ମୋଟା, କହୁଣୀ କଡ଼ିରୁ ହାତ ପାପୁଲି ଯାଏ କିଛି ସାନ ଜଣାଯାଏ । ମୁହଁଟି ଚେପ୍‌ଟା, ବସନ୍ତ ଦାଗପୂରା, ନାକଟି ବେଶି ଚେପା ଆଉ ମୋଟା । ଚାଲିବାବେଳକୁ ଜଙ୍ଘକୁ ଜଙ୍ଘ ଘଷିଯାଏ । ମୁଣ୍ଡରେ ଗୋଟାଏ ଅଧୁଲିଟା ପରି ସିନ୍ଦୂର ଟୋପା । ଆଖିରେ ମନ୍ତ୍ର । କଜ୍ଜ୍ୱଳକଳା, ହେଲେ ଦେହରଙ୍ଗ ସହିତ ମିଶିଯାଇଛି । ଜଣାପଡ଼େ ନାହିଁ । ଟାଣ ଗୁଣିଆ । ସରସ୍ୱତୀଙ୍କ ଦେହରୁ ଭୂତ କାଢ଼ିବାରେ ଏହାର ସାହାଯ୍ୟ ନିଆଯାଇଥିଲା ।

**ଶ୍ୟାମ ଗୋଛାଇତ** - (ଛମାଣ ଆଠଗୁଣ୍ଠ) ଜାତିରେ ବାଉରୀ । ଏହାର ବିଲର ତଳିଗୁଡ଼ିକ ମଂଗରାଜ ଅଧାଅଧି ଆପଣା ଜମି ପାଇଁ ଓପାଡ଼ି ନେଇଥିଲେ ଯେ ଗଛ ନିଃଶ୍ୱାସ ମାରିବାକୁ ବାଟ ରଖିନାହୁଁ । ଶ୍ୟାମର କାକୁତି ମିନତି ବ୍ୟର୍ଥ ଯାଇଥିଲା । ବିଲରେ ଅପ୍ରତ୍ୟାଶିତ ମଂଗରାଜଙ୍କୁ ଦେଖି ତା'ର 'ପାଞ୍ଚହାତ ଦୂରକୁ କୋଡ଼ିଟା ଫୋପାଡ଼ି ଦେବା', 'ହାତଯୋଡ଼ି ଦଶହାତ ଦୂରରେ' ଛିଡ଼ା ହେବା ଭିତରେ ମଂଗରାଜଙ୍କ ପ୍ରତି ତା'ର ଭୟ ଓ ସମ୍ଭ୍ରମ ପ୍ରକାଶିତ । ମଂଗରାଜଙ୍କ ଧମକରୁ ପରେ ଜଣାପଡ଼ିଛି ଯେ, ସେ ମଧ୍ୟ ତାଙ୍କର ଅନ୍ୟତମ ଖାତକ ।

**ଶ୍ୟାମଘନ ବାବୁ** - (ପେଟେଣ୍ଟ ମେଡ଼ିସିନ) ଜନୈକ ଭଦ୍ରଲୋକ । ବଦଖିଆଲି ଆଦି ରୋଗପାଇଁ ଗୋପୀବାବୁଙ୍କ ଛାଞ୍ଚୁଣୀ ପ୍ରହାର ଔଷଧ ସଂପର୍କରେ ଶୁଣି ପଚାରିଚନ୍ତି ବୈଦ୍ୟଶାସ୍ତ୍ର । ଡାକ୍ତରୀ କିତାବ କାହିଁରେ ଏ ରୋଗକୁ ଏ ଔଷଧର ବ୍ୟବସ୍ଥା ନାହିଁ ?

**ଶ୍ୟାମଘନ ପଟ୍ଟନାୟକ** - (ପେଟେଣ୍ଟ ମେଡ଼ିସିନ) ଚନ୍ଦ୍ରମଣିଙ୍କ ପିତା, ଜମିଦାର । ପୁଅର ଶିକ୍ଷାପାଇଁ ଆଗ୍ରହୀ । ସ୍କୁଲ ପଠାଇବା ସହ ମାଷ୍ଟର ରଖିବା ସତ୍ତ୍ୱେ ପୁଅର ନିଶାଗ୍ରସ୍ତ ହେବା, ଚରିତ୍ର ସ୍ଖଳିତ ହେବା ଦେଖି ବିବାହ କରାଇ ଦେଇଥିଲେ । ପୁଅ ମନଇଚ୍ଛା ଦେଣା କରିବା ଦେଖି ସବୁ ବିଷୟ ସମ୍ପତ୍ତି ବୋହୂ ସୁଲୋଚନା ନାମରେ ଲେଖି ଦେଇଥିଲେ ।

**ଶ୍ୟାମ ଦାସ** - (କମଳା ପ୍ରସାଦ ଗୋରାପ) ବାବୁ ରାମହରି ନାୟକଙ୍କ ଗୁମାସ୍ତା । କମଳାପ୍ରସାଦ ଗୋରାପ ହଜିବାର ଖବର ପହଞ୍ଚିବା ଦିନ ଇଏ ଜ୍ୟୋତିଷ କମଳଲୋଚନ ମହାନ୍ତିଙ୍କୁ ପରିହାସ କରିଥିଲେ ।

**ଶ୍ୟାମବନ୍ଧୁ ମହାନ୍ତି** - (ରେବତୀ) ନାୟିକା ରେବତୀର ବାପା । କଟକ ଜିଲ୍ଲାର ହରିପୁର

ପ୍ରଗନାର ପାଟପୁର ଗାଁରେ ଘର । ଜମିଦାର ତରଫରୁ ଗ୍ରାମର କରଣ । ଦରମା ମାସକୁ ଦୁଇଟଙ୍କା, ଅନ୍ୟାନ୍ୟ ମିଶାଇ ମାସକୁ ଆୟ ପ୍ରାୟ ଚାରିଟଙ୍କା । ଶ୍ୟାମବନ୍ଧୁଟି ବଡ଼ ସିଧା ସଳଖ ଲୋକ । ପ୍ରଜାମାନେ ମାନନ୍ତି, ସୁଖ ପାଆନ୍ତି । ବାପରେ, ଧନରେ କହି କହି ଦୁଆର ଦୁଆର ବୁଲି ଖଜଣା ଅସୁଲକରେ, କାହାରିଠାରୁ ଅନ୍ୟାୟରେ ପଇସାଟିଏ ନିଏ ନାହିଁ । ଜମିଦାର ଘର ଟଙ୍କାକୁ ଶ୍ୟାମବନ୍ଧୁ ଶିବ ନିର୍ମାଲ୍ୟ ପରି ଜ୍ଞାନ କରେ । ରେବତୀକୁ ପାଠପଢ଼ାଇବା ପାଇଁ ଆଗ୍ରହୀ ଓ ସେହି କାରଣରୁ ବାସୁଦେବକୁ ନିଯୁକ୍ତ କରିଥିଲେ । ସରଳ, ପରୋପକାରୀ, କର୍ତ୍ତବ୍ୟନିଷ୍ଠ ଏ ବ୍ୟକ୍ତିଟି ଚିନ୍ତାରେ ଥିଲେ ଆଧୁନିକ । ବାଡ଼ିରେ ପଡ଼ି ଯେ ମୃତ୍ୟୁବରଣ କରିଥିଲେ ।

**ଶ୍ୟାମ ମଲ୍ଲ -** (ଛମାଣ ଆଠଗୁଣ୍ଠ) ରାମଚନ୍ଦ୍ର ମଙ୍ଗରାଜଙ୍କ ମାଉସୀ ପୁଅ ଭାଇ । ସହର ଯାଇ ପିଆଜ ମିଶା କୋବି ଖାଇ ଥିବାରୁ ପ୍ରାୟଶ୍ଚିତ୍ତ କରିଛନ୍ତି । ମଂଗରାଜ ତାଙ୍କର ଦେଢ଼ାବାଟି ପୈତୃକ ଲାଖରାଜରୁ ୧୫ ମାଣ ଜମି କିଣି ନେଇଗଲେ ମାଣ ପାଞ୍ଚ ଟଙ୍କାରେ । ଏ ଚରିତ୍ରଟିର ଅସହାୟତା ମଧ୍ୟରେ ମଂଗରାଜଙ୍କ ଶୋଷଣର ଆଦ୍ୟ ସ୍ୱରୂପ ପ୍ରତିଫଳିତ ।

**ଶ୍ୟାମ ସାହୁ -** (ଅଧର୍ମବିତ୍ତ) ବିଦ୍ୟାଧରର ମଳାଶୁର ଓ ପଦ୍ମାବତୀର ମାମୁ । ଘର ଢୋରେମେ ଖାଲପାଳ । ବିଦ୍ୟାଧର ପଦ୍ମାବତୀକୁ ବର୍ଷକ ପରେ ପାଇ ଖାଲପାଳରେ ପହଞ୍ଚିବାରୁ ଭାଣିଜୀ ଓ ଭଣଜା ଜ୍ୱାଇଁକୁ ଇଏ ବୌଦ ପଠାଇଛନ୍ତି ।

**ଶ୍ରୀକଣ୍ଠ ପଟ୍ଟନାୟକ -** (ପ୍ରାୟଶ୍ଚିତ୍ତ) ସମସରପୁର ଜମିଦାରଙ୍କ ଛାମୁକରଣ ।

**ଶ୍ରୀହରି -** (ମାମୁ) ଉତ୍ତର ରାୟଙ୍କ କନିଷ୍ଠ ପୁତ୍ର ଓ ନରହରିର ସାନ ଭାଇ । ପ୍ରତାପଙ୍କ ମୃତ୍ୟୁ ବେଳେ ସେ ଖୁବ୍ ସାନ ହୋଇଥିଲା ।

**ସଇତା -** (ପ୍ରାୟଶ୍ଚିତ୍ତ) ଗୋବିନ୍ଦର ବିଶ୍ୱସ୍ତ ସେବାକାରୀ । ସଦାନନ୍ଦର ଆଚରଣ ପ୍ରତି ପ୍ରଥମରୁ ସନ୍ଦେହୀ । ଗୋବିନ୍ଦର ସୁଖଦୁଃଖରେ ସେ ସର୍ବଦା ନିଜର ବିଶ୍ୱସ୍ତତା ପ୍ରମାଣିତ କରିଛି । ନିଜର ସଞ୍ଚିତ ଧନ ଗୋବିନ୍ଦର ଚିକିତ୍ସାରେ ଖର୍ଚ୍ଚ କରିବା ଏହାର ସବୁଠୁ ବଡ଼ ଉଦାହରଣ । ରାମ ସାହୁଠାରୁ ଗୋବିନ୍ଦ ସଂପର୍କୀୟ ସଦାନନ୍ଦର ଗୁଜବ ଶୁଣି ସେ କାନ୍ଦି ଉଠିଥିଲା । ଉତ୍ତର ଜୀବନରେ ସମସ୍ତ ଦୁର୍ଯୋଗର କାରଣ ଭାବେ ନିଜକୁ ଦାୟୀ କରିଥିଲା ଓ ସନ୍ୟାସ ଗ୍ରହଣ କରିଥିଲା । ବୈଷ୍ଣବ ଓ ସଂକର୍ଷଣଙ୍କ କୁଟୀର ଆଦିର ଆତ୍ମ ପରିଚୟ ପ୍ରଦାନ ବିନା ଯତ୍ନ ନେଇ ସନ୍ୟାସତ୍ୱରେ ମଧ୍ୟ ନିଜର ସେବକପଣ ସେ ବଜାୟ ରଖିଥିଲା । ଶେଷକୁ ଗୋବିନ୍ଦ ତାକୁ ଆପଣା ଜମିଦାରୀର କରଣମାନଙ୍କ କାମକୁ ଦେଖିବାକୁ ରଖିଥିଲେ । ସେ ଉତ୍ତର ଜୀବନରେ ଗୈରିକ ପରିଧାନ ଓ ହବିଷାନ୍ନ ଭକ୍ଷଣ କରୁଥିଲେ । ଏ ଚରିତ୍ରଟି ନିଜର ଅପୂର୍ବ ସେବକତ୍ୱ ପ୍ରମାଣିତ କରି ସ୍ମରଣୀୟ ହୋଇପାରଚି ।

**ସଙ୍କର୍ଷଣ ମହାନ୍ତି -** (ପ୍ରାୟଶ୍ଚିତ୍ତ)-ସରସରପୁର କରଣ ଗୋଷ୍ଠୀର ପ୍ରଧାନ । କଲିକତା ଆଦିରେ ବିବିଧ କାମ କରି ବେଶ୍ ସଂପତ୍ତି ଅର୍ଜନ କରିପାରିଥିଲେ ଓ ଜମିଦାରୀ କିଣିଥିଲେ । ସାହାଯ୍ୟ କରିବାରେ ସେ ଥିଲେ ଉଦାର ହସ୍ତ । ବିପଦ ଆପଦରେ ଭରସା । ତାଙ୍କର ସୁନାମ

ତେଣୁ ସର୍ବତ୍ର ଥିଲା । ଦୁର୍ଗୁଣ ଭିତରେ ବଦ୍‌ରାଗୀ । ଏହାଙ୍କ ବଂଶ ପରମ୍ପରା ନ ଥିବାହେତୁ ଶ୍ରୀକରଣମାନେ ଏହାଙ୍କୁ ଉନ୍ନତକରଣ ଭାବେ ସ୍ୱୀକାର କରୁନଥିଲେ ଓ ଏମାନଙ୍କୁ କୃଷ୍ଣପକ୍ଷିଆ ମହାନ୍ତି ବୋଲି କହୁଥିଲେ । ଗୋଲାମ ମହାନ୍ତି ବୋଲି ମଧ୍ୟ କହୁଥିଲେ । ଶ୍ରୀକରଣ ସମାଜରେ ମିଶିବାକୁ ସଂକର୍ଷଣ ମହାନ୍ତି ଥିଲେ ଅତ୍ୟନ୍ତ ଆଗ୍ରହୀ । ତେଣୁ ସେ ନାନା ଉପାୟ କରୁଥିଲେ । କୌଶଳ ବଳରେ ନିଜର ଏକମାତ୍ର କନ୍ୟା ଇନ୍ଦୁମତୀର ବିବାହ ବୈଷ୍ଣବଙ୍କ ପୁତ୍ର ଗୋବିନ୍ଦଙ୍କ ସହ କରି ପାରିଥିଲେ । ଅଥଚ ଅପ୍ରତ୍ୟାଶିତ ତାଙ୍କର ବିଷୟୀ ମନ, ସଂସାର ନିବଦ୍ଧ ଦୃଷ୍ଟି ବଦଳି ଯାଇଥିଲା । ବୈରାଗ୍ୟ ତାଙ୍କୁ ଆଚ୍ଛନ୍ନ କରିଥିଲା । ଛୋଇଁ ଗୋବିନ୍ଦଙ୍କୁ ନିଜ ପାଇକମାନଙ୍କ ମାଡ଼, ଇନ୍ଦୁମତୀର ବିୟୋଗ ଏସବୁ ତାଙ୍କୁ ଦୋହଲାଇ ଦେଇଥିଲା । ଆପଣାର ଭୁଲକୁ ସେ ଅନୁଭବ କରିଥିଲେ । ସଂପତ୍ତି ବ୍ୟବସ୍ଥା କୁଳଦେବତା ବିନୋଦ ବିହାରୀଙ୍କ ନାମରେ କରି ନିଜେ ସନ୍ୟାସ ଗ୍ରହଣ କରି ବୃନ୍ଦାବନକୁ ଚାଲିଗଲେ ସେଠି ବୈଷ୍ଣବଚରଣଙ୍କ ଶିଷ୍ୟ ଓ ସଖା ହୋଇ ରହିଲେ ।

**ସଦାନନ୍ଦ** - (ପ୍ରାୟଶ୍ଚିତ୍ତ) ଗୋବିନ୍ଦର ମା' ହରିପ୍ରିୟାଙ୍କ ଖେଳସାଥୀ ଦୁଃଶାସନର ପୁଅ । ହରିପ୍ରିୟାଙ୍କ ସ୍ନେହମମତା ପ୍ରଥମେ ଯେ ପାଉଥିଲେ, ତା'ପରେ ନିଜ ପୁଅ ଗୋବିନ୍ଦ । ଯେ ଥିଲା ଧନଲୋଭୀ ଓ କୁଚକ୍ରୀ । ରାଜୀବଲୋଚନ ଏହାଙ୍କୁ ଅସ୍ତ୍ରକରି ଗୋବିନ୍ଦ ଓ ଇନ୍ଦୁମତୀର ବିବାହ ଘଟାଇ ପାରିଥିଲେ । ସଦାନନ୍ଦ ଅର୍ଥପାଇଁ ବୈଷ୍ଣବ ଓ ହରପ୍ରିୟାଙ୍କଠାରେ ବିଶ୍ୱାସଘାତକତା କରିବାକୁ ପଶ୍ଚାତପଦ ହୋଇନଥିଲେ । ପ୍ରତିପଦକ୍ଷେପରେ ନିଜର ଚାତୁରୀଦ୍ୱାରା ଗୋବିନ୍ଦକୁ ପ୍ରଭାବିତ କରି ନିଜ ସ୍ୱାର୍ଥ ଉଦ୍ଦେଶ୍ୟରେ ନିୟନ୍ତ୍ରିତ ଓ ପରିଚାଳିତ କରିଥିଲା । ଏହାରିପାଇଁ ଦୁଇଟି ଜମିଦାର ପରିବାରର ସର୍ବନାଶ ଘଟିଥିଲା । ଯେଉଁ ସଦାଗ୍ରୟ ଜମିଦାର ହରିହର ମର୍ଦ୍ଦରାଜ ଏହାଙ୍କୁ ବିଶ୍ୱାସରେ ଓ ବନ୍ଧୁତାରେ ନାଏକ କରି ନେଇଥିଲେ । ତାଙ୍କର ତହବିଲ ହେରଫେର କରିବାରେ ମଧ୍ୟ ସଦାନନ୍ଦ କୁଣ୍ଠିତ ହୋଇନଥିଲେ । ନିଜର ଅନ୍ନ ଓ ଆଶ୍ରୟଦାତାମାନଙ୍କ ସର୍ବନାଶ ଯେପରି ଏହାଙ୍କ ଜୀବନରେ ବ୍ରତଥିଲା । ତହବିଲ ତୋଷରଫ କାରଣରୁ ସେ କାରାଦଣ୍ଡିତ ହୋଇଥିଲା ଓ ନିଜର ଅପରାଧ ବୋଧ ସଂପର୍କରେ ସଚେତନ ହୋଇ ପ୍ରାୟଶ୍ଚିତ୍ତ କରି ସନ୍ୟାସ ଗ୍ରହଣ କରିଥିଲା ଓ ବୃନ୍ଦାବନକୁ ଯାଇଥିଲା । ସେଠି ମଧ୍ୟ ପଠାଣ ନାଉରିଆଙ୍କ ଦ୍ୱାରା ଅପମାନିତ ହୋଇ ଏକଦା ଆପଣା ଚାକର ସଇତା ଦ୍ୱାରା ଉଦ୍ଧାର ପାଇଥିଲା । ଏହାର ଖଳତ୍ୱ, ଅନୁତାପଦ୍ୱାରା ତିରୋହିତ ହୋଇଚି । ନିଜର ଅନ୍ୟାନ୍ୟ ଉପନ୍ୟାସମାନଙ୍କରେ ଫକୀରମୋହନ ଖଳଚରିତ୍ର ମାନଙ୍କପ୍ରତି ଯେତେ କଠୋର ଓ ନିର୍ଦ୍ଦୟ, ସଦାନନ୍ଦ ପ୍ରତି ସେପରି ନୁହନ୍ତି । ତାକୁ ଅନୁତପ୍ତ ଓ ସନ୍ୟାସୀ କରାଇ ସେ ନୀରବ ରହିଛନ୍ତି ।

**ସଦାନନ୍ଦ ଖଡ଼ିରତ୍ନ** - (ମାମୁଁ) ଗଣକ ଚାନ୍ଦମଣିର ଜନ୍ମକୁଣ୍ଡଳୀର ପ୍ରସ୍ତୁତ କର୍ତ୍ତା ।

**ସଦାଶିବ ବିଦ୍ୟାସାଗର** - (ମାମୁଁ) ମୁକ୍ତିମଣ୍ଡପ ସଭାପଣ୍ଡିତ । ଉତ୍ତରରାୟଙ୍କ ବିୟୋଗରେ ହୋଇଥିବା ପଣ୍ଡିତସଭାର ସଭାପତି । ବ୍ରହ୍ମ ଓ ଏହାର ସ୍ୱରୂପାଦି ସଂପର୍କରେ ତାଂକର ଦାର୍ଶନିକ ଦୀର୍ଘ ବ୍ୟାଖ୍ୟା ଉଲ୍ଲିଖିତ । ଗୀତାଜ୍ଞାନକୁ ସେ ଶ୍ରେଷ୍ଠଜ୍ଞାନ ବୋଲି ଆଲୋଚନା କରିଛନ୍ତି ।

**ସଦାଶିବ ଶନି ବିଗ୍ରହ ଖଡ଼ିରତ୍ନ** - (ମାମୁଁ) ନାଜରଂକ ଗ୍ରହରିଷ୍ଟ ଶାନ୍ତି ପାଇଁ ନିୟୋଜିତ

ବ୍ୟକ୍ତି । ଖୋଦାବକ୍ସର ଟଙ୍କା ହେରଫେର ବେଳେ ସେ ନାଜରଙ୍କୁ କାମଦାମ ବନ୍ଦ ରଖିବାକୁ କହି ଅପମାନିତ ହୋଇଥିଲେ ।

**ସର୍ଦ୍ଦାର ଖାଁ** - (ଲଛମା) ମୋଗଲପକ୍ଷର ଅନ୍ୟତମ ମନସବଦାର ଓ ଆଲିବର୍ଦ୍ଧିଖାଁଙ୍କର ଅପରତମ ବିଶ୍ୱସ୍ତ ଅନୁଚର । ଭାସ୍କର ପଣ୍ଡିତଙ୍କ ପାଖକୁ ଜାନକୀରାମଙ୍କ ସହ ସର୍ଦ୍ଦାରଖାଁ ମଧ ଦୌତ୍ୟ କାର୍ଯ୍ୟରେ ଯାଇଥିଲେ । ଭାସ୍କରପଣ୍ଡିତଙ୍କୁ ସନ୍ଧି ସ୍ଥାନକୁ ଜାନକୀରାମ ସହ ସେ ପାଛୋଟି ଆଣିଥିଲେ ଓ ପରିଣତିରେ ଦେଖାଗଲା ସେଇ ସନ୍ଧି ଆୟୋଜନ ସ୍ଥାନରେ ସେ କରିଥିଲେ ମୃତ୍ୟୁ ବରଣ ।

**ସନା ରଣା** - (ଛ'ମାଣ ଆଠଗୁଣ୍ଠ) ମଙ୍ଗରାଜଙ୍କ ସାରିଆ ବିରୁଦ୍ଧ ଚକ୍ରାନ୍ତର ଗୁରୁତ୍ୱପୂର୍ଣ୍ଣ ସାକ୍ଷୀ । ମୁକୁଳାବାଳ, ଧୂଳିଆଦେହ, ପିଠିହାତ, ଗାଲରେ ମାଡ଼ରଦାଗ ସହ ହାଜର ହୋଇ ପ୍ରଥମେ କିଛି ଜାଣିନଥିବାକହି ଦାରୋଗାଙ୍କ ଆଦେଶରେ 'ଚାଟଶାଳୀ' ବୁଲି ଅଧଘଣ୍ଟାରେ ସେ ସ୍ୱୀକାରୋକ୍ତି ଦେଇଥିଲା,- ମଙ୍ଗରାଜ ତାକୁ ପ୍ରରୋଚିତ କରିଥିଲେ କହିବାକୁ ଯେ ଠାକୁରାଣୀ ତାକୁ ସ୍ୱପ୍ନଦେଇ କହିଛନ୍ତି, ତୋ ସହ କଥା ହେବେ, ପୁଅ ଦେବେ । ବୁଢ଼ୀମଙ୍ଗଳା ଭିତ୍ତିକ ସବୁ ଚକ୍ରାନ୍ତର ଇଏ ପ୍ରଧାନ ସୂତ୍ର । ଅଥଚ ମଙ୍ଗରାଜଙ୍କ ପ୍ରତାରଣାରୁ ଯେ ମଧ ମୁକ୍ତ ନୁହେଁ । ଛ'ମାଣ ଆଠଗୁଣ୍ଠ ଜମି ବନ୍ଧକଦେଇ ମନ୍ଦିର ତୋଳିବାକୁ ସାରିଆ ଭଗିଆକୁ ଇଯେ ବୁଦ୍ଧି ଦେଇଥିଲେ । ନିର୍ଦ୍ଦିଷ୍ଟ ପରିମାଣ ଅର୍ଥ ମଙ୍ଗରାଜଂକଠାରୁ ନପାଇ ପାଇଥିଲା ମାତ୍ର ଚାରିଅଣା ।

**ସନ୍ତିଆ ଜେନା** - (ଛମାଣ ଆଠଗୁଣ୍ଠ) ଗୋପାଳପୁର ଗାଁର ଛାଟିଆ । ଗୋପୀସାହୁ ଦୋକାନଘରେ ସ୍ତ୍ରୀଲୋକ ଜଣେ ମରିପଡ଼ିଥିବା ଦେଖି ସେ ଫାଣ୍ଡିକୁ ଏତଲା ଦେବାକୁ ଯାଇଥିଲା ।

**ସଟଲ ଓୟାର୍ଥସାହେବ** - (ବାଲେଶ୍ୱର ରାହାଜାନୀ) ବାଲେଶ୍ୱର ଜିଲ୍ଲାର ପ୍ରଥମ ପୁଲିସ ଡିଷ୍ଟ୍ରିକ୍ଟ ସୁପରିଣ୍ଟେଡେଣ୍ଟ । ଡକାୟତ ଦଳକୁ ଧରିବାପାଇଁ ସବଇନ୍‌ସପେକ୍ଟର ରାଜକିଶୋର ଚୌଧୁରୀଙ୍କୁ ନିଯୁକ୍ତ କଲେ ଓ ଉତ୍ସାହିତ କରିଥିଲେ । ଇଂରେଜ ଜାତିର କାର୍ଯ୍ୟପ୍ରଣାଳୀର ସ୍ୱାତନ୍ତ୍ର୍ୟ ଦର୍ଶା ଯାଇଛି ଏହି ଚରିତ୍ର ମାଧ୍ୟମରେ ।

**ସପନାପାତ୍ର** - (ବଗଲା ବଗୁଲୀ) ଗଳ୍ପର ନାୟକ 'ବଗଲା' । ବିଦିଆପାତ୍ରର ପୁଅ । ଘର ଭୁଷଣ୍ଡପୁର । ଏହାର ପତ୍ନୀ ଚେମୀ । ଏ ଦୁଇ ସ୍ୱାମୀସ୍ତ୍ରୀଙ୍କର  ନିର୍ମାୟାଗୁଣ ଓ ପରସ୍ପର ପ୍ରତି ଐକାନ୍ତିକ ସ୍ନେହ ଦେଖି ଗାଁବାସୀ ଯାଙ୍କୁ ସ୍ନେହରେ, 'ବଗଲାବଗୁଲୀ' ବୋଲି ଡାକନ୍ତି । ବୟସ ସତର ବର୍ଷ । ବାପ ପ୍ରତି ଅଚଳଭକ୍ତି , ଶୁଣିଶୁଣି ପୁରାଣ ବୋଲିପାରେ । ସ୍ତ୍ରୀକୁ ଏକୁଟିଆ ନରଖିବାକୁ ଇଚ୍ଛାକରି ବାପଅଡେ ପାଇଥିବା ଚଉକିଆଗିରି ଛାଡ଼ି ଦେବାକୁ ଚାହିଁଛି । ସ୍ତ୍ରୀ ଓ ସେ ଏପରି ଏକ ମନପ୍ରାଣ ଯେ ଦୁହେଁ ଏକାଦିନେ ଆଗପଛ ହୋଇ ପ୍ରାଣ ଛାଡ଼ିଛନ୍ତି ।

**ସରସ୍ୱତୀ** - (ପାଠୋଇବୋହୂ) ମୟୂରଭଞ୍ଜ ଦୋସମାଳୀ ଭାଲୁକପୋଷି ଗାଁର ପ୍ରଧାନ ଘନଶ୍ୟାମ ମହାନ୍ତିଙ୍କ ଝିଅ, ଗଳ୍ପର ନାୟିକା । ବୟସ ପନ୍ଦର । ଲକ୍ଷ୍ମୀପରି ରୂପଗୁଣ । ନାୟକ ଗୋପାଳଚରଣଂଙ୍କ ସହ ବିବାହ । ସ୍ୱାମୀ ଏହାଂକୁ ଶିକ୍ଷିତା କରାଇବାକୁ ଯତ୍ନବାନ ହେଲେ ।

ସାନ୍ତାଳ ବସତି ପୂର୍ବେ ବାପଘର ଗାଁରେ ତାଂକୁ ସମସ୍ତେ 'ସବୁଠୁ ବୁଦ୍ଧିମତୀ' କହୁଥିବାର ଶୁଣିଶୁଣି ନିଜକୁ ଯେ ଖୁବ୍ ବୁଦ୍ଧିମତୀ ମଣୁଥିଲେ । ତେଣୁ ପାଠପଢ଼ିବାରେ ଅନିଚ୍ଛୁକ ଥିଲେ । ବସ୍ତୁତଃ ସେ ଥିଲେ ନିର୍ବୁଦ୍ଧିଆ । ସ୍ୱାମୀଂଙ୍କ 'ଭକ୍ତିଦାୟିନୀ ସଭା'ରେ ସନ୍ଧ୍ୟାବେଳେ ବସାଉଠା ସଂପର୍କରେ ସନ୍ଦେହପ୍ରକାଶ କରିଥିଲେ । 'ଭକ୍ତିଦାୟିନୀ' କୁ 'ଭଗବତୀ ଡାଆଣୀ', 'ସଭା'କୁ 'ଶୋଭା' ମନେକରି ବାୟାଣୀ ପରି ହୋଇଥିଲେ । ଭଣ୍ଡାରୀପିଲା ଅର୍ଜୁନାଠାରୁ କାଳ୍ପନିକ 'ଭଗବତୀ ଡ଼ାଆଣୀର' କାଳ୍ପନିକ ସଂଧାନପାଇ ମୁଣ୍ଡବାଡ଼େଇ  ରକ୍ତାକ୍ତ ହୋଇ ଗଲେ ଓ ବାହୁନିବାହୁନି ମୂର୍ଚ୍ଛା ପ୍ରାୟ ହୋଇଥିଲେ ଓ ଗୁଣିଆଭାବରେ ଡ଼ରି ଚେତା ହରାଇଲେ । ସୀତା ଖୁଡ଼ୀଶାଶୁଙ୍କ ଯତ୍ନରେ ସୁସ୍ଥ ହୋଇଥିଲେ । ନିଜକୁ ବୃଥା ବୁଦ୍ଧିମତୀ ମନେକରି ଅଶିକ୍ଷା ହେତୁ ନିଜର ତଥା ସ୍ୱାମୀଙ୍କର ସାମାଜିକ ହଟହଟାର କାରଣ ହୋଇଥିଲେ ।

**ସରସ୍ୱତୀ ଦେଈ -** (ମାମୁଁ) ଦାଶରଥିଙ୍କ ପରିବାରର ପ୍ରକୃତ କର୍ତ୍ତ୍ରୀ । ଦୟାଳୁ, ସ୍ନେହଶୀଳା । ଏହାଙ୍କ ଆଗ୍ରହ ଓ ତତ୍ପରତାରେ ଚାନ୍ଦମଣି ସହ ଉତ୍ତରରାୟ କୁଳପ୍ରଦୀପ ପ୍ରତାପଉଦିତ ମଲ୍ଲଙ୍କ ମଙ୍ଗଳକୃତ୍ୟ ସଂପନ୍ନ ହୋଇପାରିଥିଲା । ଏହାଙ୍କ ସ୍ୱାମୀ ପୂର୍ବରୁ କଲିକତାରେ ଚାକିରି କରୁଥିଲେ, ଦୀର୍ଘଦିନଧରି ତାଂକର ମନ ନମିଳିବାରୁ ସରସ୍ୱତୀ ନିଜ ଖୁଡ଼ୁତା ଝିଅ ଚାନ୍ଦମଣିର ମଙ୍ଗଳକୃତ୍ୟପରେ ତାର ଶ୍ୱଶୁର ଘରକୁ ଯାଇଥିଲେ ଓ ଧାଇମା ଭାବେ ପରିଚିତ ହୋଇଥିଲେ । ଏହାଙ୍କ ବ୍ୟକ୍ତିତ୍ୱର ଯଥୋଚିତ ପରିଚୟ ମିଳିଚି ଉତ୍ତର ରାୟଙ୍କ ଉଆସରୁ, ଯେଉଁଟି ସେପ୍ରକୃତରେ ମା'ର ସମ୍ମାନ, କର୍ତ୍ତ୍ରୀର ଅଧିକାର ପାଇଛନ୍ତି ସରଳବିଶ୍ୱାସୀ, କର୍ମଠ, ସେବାପରାୟଣା, ଧର୍ମପ୍ରାଣାଏ ଚରିତ୍ର  ଭାବରେ ମାମୁଁ ଉପନ୍ୟାସରେ ସେ ଆପଣାର ପ୍ରଭାବ ବିସ୍ତାରକରିଚି ଦୃଢ଼ଭାବେ ଓ ଉପନ୍ୟାସର ଅନ୍ୟତମ ଆକର୍ଷଣ ହୋଇପାରିଚି ।

**ସାଆନ୍ତାଣୀ -** (ଛମାଣ ଆଠଗୁଣ୍ଠ) ରାମଚନ୍ଦ୍ର ମଂଗରାଜଂଙ୍କ ସ୍ତ୍ରୀ । ମଂଗରାଜଂଙ୍କ କୁଟୁମ୍ବ ପ୍ରସଙ୍ଗରେ ଏହାଂକ ପରିଚୟ ଏପରି ପ୍ରଦତ୍ତ - '' ଉଆସ ମଧରେ ସାଆନ୍ତାଣୀ ଗୋଟିଏ କୋଠରୀରେ ପଡ଼ିଥାନ୍ତି । କାହାରି ସହିତ କଥାନାହିଁ କେବଳ ଭାଟ ଭିକାରୀ, ଭୋଗୀ, ଶୋଷି ଆସିଲେ ତାହାଙ୍କୁ ଖୋଜନ୍ତି'' ତାଂକ ମୃତ୍ୟୁ ବେଳେ ମଗୁଆର ବିଳାପ ଥିଲା '' ପିମ୍ପୁଡ଼ି ପେଟବଥା କଥା କିଏ ଜାଣିବ, ମତେ ଜ୍ୱର ହେଲେ କିଏ ପଥି ରାନ୍ଧି ଖୁଆଇବ ''; ମଗୁଆ ଦାରୋଗାଙ୍କୁ ଯେଉଁ ସାକ୍ଷ୍ୟ ଦେଇଥିଲା ସେଥିରେ ସାଆନ୍ତାଣୀଙ୍କ ସାରିଆ ପ୍ରତି ସମବେଦନା ବିବିଧ ଭାବେ ସୂଚିତ । ମଂଗରାଜଙ୍କୁ ସୁପଥଗାମୀ କରାଇବାପାଇଁ ତାଙ୍କର ପ୍ରଚେଷ୍ଟା ଥିଲା ନିରନ୍ତର ଅଥଚ ତାଂକର ହତାଦର ସାଆନ୍ତାଣୀଙ୍କୁ କରିଥିଲା ଦୁଃଖି । ଚମ୍ପା ଓ ମଂଗରାଜଂକ ଗୋପନ ଆଲୋଚନା କାଳରେ ସାନ୍ତାଣୀଙ୍କ ସେଥିରୁ ନିବୃତ୍ତି ପ୍ରଚେଷ୍ଟା ଓ ଉଭୟଂକ ଅବଜ୍ଞା ତଥା ଅପମାନ ତାଂକୁ ମୃତପ୍ରାୟ କରିଦେଇଥିଲା । ପୁନଶ୍ଚ ଚମ୍ପାର ସବାରୀ ଚଢ଼ି କୁଆଡ଼େ ଯିବା ଓ ଫେରି ମଙ୍ଗରାଜଙ୍କୁ ହସିହସି କିଛି କହିବା ତାଙ୍କୁ ଅଧିକ ରୁଗ୍‌ଣ କରିଦେଇଥିଲା । ସାରିଆର ଜମି ଛାଡ଼ିଦେବାକୁ ମଙ୍ଗରାଜଙ୍କୁ ଅନୁରୋଧ କରି ସେ ବିଫଳ ହୋଇଥିଲେ । ଶେଷରେ, ଶ୍ରାବଣ ମାସର

ରାଧାଷ୍ଟମୀଦିନ ଦେଖାଗଲା ଚଉରାମୂଳେ ବୃନ୍ଦାବତୀଙ୍କ ପାଖରେ ସେ ପଡ଼ିଛନ୍ତି ମୃତାବସ୍ଥାରେ । ତାଙ୍କର ଯେଉଁ ଗୁଣ ସୁମରଣା ଏ ଅବସ୍ଥାରେ ପୁରଜନ କରିଚନ୍ତି ସେଥିରୁ ଏହାଙ୍କ ବିବିଧ ସୁଗୁଣାବଳୀର ପରିଚୟ ମିଳେ । କ୍ଷମା, କରୁଣା ଓ ଉଦାରତାର ସାଆନ୍ତାଣୀଥିଲେ ମୂର୍ତ୍ତି । ଉପନ୍ୟାସରେ ଖୁବ୍ ଅଳ୍ପ ସମୟପାଇଁ ସାଆନ୍ତାଣୀ ଆସିଥିଲେ ହେଁ ଏହାଙ୍କ ଉଜ୍ଜ୍ୱଳମୂର୍ତ୍ତି ଓ ଦିବ୍ୟପ୍ରଭାବ ଶେଷପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ । ପରବର୍ତ୍ତୀ କାଳରେ ଲିଖିତ ଲଛମାର ରାୟବଣିଆ ଦୁର୍ଗେଶ୍ୱରୀ ମହାଦେବୀଙ୍କ ଆଚରଣ ଓ ଗୁଣାବଳୀର - ଯେଉଁ ଚିତ୍ରଣ ଫକୀରମୋହନ ଦେଇଚନ୍ତି ତାହା ସାଆନ୍ତାଣୀ-ଅନୁରୂପ ।

**ସାଧୁ ସାହୁ** - (ମାମୁ) ଜଣେ ତେଲି ମହାଜନ । ଉଭର ରାୟଂକ ପରିବାର ସହ ସେ ଆନ୍ତରିକ ଭାବେ ସଂପୃକ୍ତ ଥିଲେ । ଆଖପାଖ ଚାଳିଶ ଖଣ୍ଡ ଗାଁରେ ତାଂକର କାରବାର । ତାଂକର କଳନ୍ତର ଖୁବ୍ କମ୍ । ଲୋକେ ଭଲ ପାଆନ୍ତି । ଋଣ ଆପେ ପରିଶୋଧ କରିଦିଅନ୍ତି । ଧାର୍ମିକ ଓ ଉଦାର ଲୋକଟିଏ । 'ସାଧୁସାହୁଏ ଡେଙ୍ଗାଭଳିଆ ଲୋକ - ଶ୍ୟାମଳ ବର୍ଣ୍ଣ - ମୁଖଟି ଢ଼ୌଲ-ଠିଆନାକ- ଆଖି ଦିଓଟି କିଛି ବଡ଼ବଡ଼-ଟିକିଏ ରଙ୍ଗାରଙ୍ଗା ଦିଶେ । ମୁଣ୍ଡରେ ସାନ ତେଲ ଚିକଣ ପେଣ୍ଡାଟିଏ ପଛକୁ ଝୁଲି ପଡ଼ିଥାଏ । ବେକଟି ଲମ୍ୱା-ବେକ ମଝି ଆଗକୁ ଗୋଟିଏ ଗେବ ବାହାରିଛି । ଦୁଇବାହୁ ବଢ଼ିଲା ପରି - କିଛି ଲମ୍ୱା । ଛାତିଗୋଟାକ ଆଉ ଦୁଇକାନ ଲୋମ ବଲ୍‌ବଲ୍ । ବାଲିବିଶିବୁଣା ହଳଦିଆ ରଙ୍ଗର ନ ହାତୀ ଖଦି ଖଣ୍ଡିଏ ଆଉ ତେଲ ଚଟ୍ ଚଟ୍ ମଳିଆ ଛହାତି ଖଣ୍ଡେ ଗାମୁଛା - ଏହି ପହରଣଟା ସବୁଦିନେ' । ସରସ୍ୱତୀ ଦେଇ ଯେବେ ଆପଣା ହାର ପଠାଇ ତିରିଶ ଭରଣ ଧାନ ଓ ନଗଦ ତିନିଶହ ଟଂକା ମାଗି ପଠାଇଲେ, ଇଏ ହାର ରଖିଲେ ନାହିଁ ଉପରନ୍ତୁ ସବୁ ଦ୍ରବ୍ୟାଦି ଦେଲେ । ଯେତେବେଳେ ଯାହା ଦରକାର ଘେନି ଯିବାକୁ କହିଲେ । ତାଂକର ମହାନୁଭବତା ଏଥିରୁ ଅନୁମିତ । ମହାଜନର ସ୍ୱାଭାବିକ ଚାରିତ୍ରିକତାରୁ ଇଏ ଯଥେଷ୍ଟ ଉର୍ଦ୍ଧ୍ୱରେ ।

**ସାନ୍ତାଣୀ** - (ସଭ୍ୟଜମିଦାର) ରାଜୀବର ମା, ଗୋପାଳର ସ୍ତ୍ରୀ । ସମଗ୍ର ଜମିଦାରୀ ଗୁମାସ୍ତା ରଙ୍ଗାଧର ମହାନ୍ତିଙ୍କ ସହାୟତାରେ ତୁଲାଉଥିଲେ । ରାଜୀବର ଦୁଷ୍ଟାମିରେ ବ୍ୟସ୍ତହୋଇ ସ୍ୱାମୀଙ୍କୁ କହି ରାଜୀବକୁ କଲିକତା ପଠାଇଦେଲେ । ରାଜୀବ ଜମିଦାର ହେବାପରେ ତାର ଆଚରଣରେ କ୍ଷୁର୍ଣ୍ଣ ହୋଇ ମନ୍ଦିରରେ ରହିଲେ ଓ ବକତେ ଠାକୁର ପ୍ରସାଦ ହବିଶ୍ୟାନ୍ନ ଭାବେ ଗ୍ରହଣ କରୁଥିଲେ । ପୁଅଂକ ବିବାହ ନିମିତ୍ତ କନ୍ୟା ଖୋଜାଆଦି କଥା ଜାଣି ବିସ୍ମିତ ହୋଇଥିଲେ । ବୋହୂ ଗୋଡ଼ରେ 'ଲେଡ଼ିଯୋତା' ମନ୍ଦିର ଭିତର ପଶି କୁଶଳଜିଜ୍ଞାସା କରନ୍ତେ - ଏପରି ବିଚିତ୍ର ବ୍ୟବହାରରେ କ୍ଷୁର୍ଣ୍ଣ ଓ ବିଷର୍ଣ୍ଣ ସାନ୍ତାଣୀ 'ବିଶ୍ୱାରୀ ପୋଇଲୀ ରାଧୀ ଆଉଗୋଟିଏ ପୁଟୁଳିଧରି ଘରୁ ବାହାରିଗଲେ ପୁରୀ ।' ମାତାମଠରେ ରହିଥିବାର ଆଠଦିନ ବାଦ ସମ୍ବାଦ ଆସିଲା ।' ବୋହୂର ଉଗ୍ର ଆଧୁନିକତା ନିକଟରେ ସାନ୍ତାଣୀଂକ ପାରଂପରିକ ଚିତ୍ରଣ ଉଭୟଂକ । ପାର୍ଥକ୍ୟ କେତେ ବିରାଟ ତାହା ପ୍ରତିପାଦିତ କରୁଚି ।

**ସାତାଣୀ -** (ଗାରୁଡ଼ିମନ୍ତ୍ର) ମଦନମୋହନର ମା'। ଜମିଦାର ଗୋଲାପଲୋଚନଙ୍କ ପତ୍ନୀ। ପ୍ରତି ଏକମାତ୍ର ସନ୍ତାନହେତୁ ମଦନମୋହନ ଅତ୍ୟଧିକ ସ୍ନେହୀ। ମଦନ କଟକକଲେଜରେ ପଢ଼ିବାବେଳେ ଏହାଂକ ସ୍ନେହର ବିଶେଷ ବିବରଣୀ ପ୍ରଦତ୍ତ। ଏ ଚରିତ୍ରର ମାତୃ-ସ୍ୱରୂପ ପ୍ରଦର୍ଶନ ହିଁ ମୂଳ ଲକ୍ଷ୍ୟ।

**ସାରିଆ -** (ଛମାଣ ଆଠଗୁଣ୍ଠ) ଗୋବିନ୍ଦପୁର ଗାଁ ତନ୍ତୀସାହିର ପରମାଣିକ ବା ପ୍ରଧାନ ଭଗିଆର ସ୍ତ୍ରୀ। ବୟସ ଅନ୍ଦାଜ ପଚିଶ ହେବ। ସ୍ୱାମୀ ଅନୁରୂପ ହୁଣ୍ଡୀଟିଏ। ସ୍ୱାମୀର ଅନୁଗତ ଓ କର୍ମସଙ୍ଗିନୀ। ଏମାନେ ନିଃସନ୍ତାନ। ଏ ଦୁଃଖରୁ ରକ୍ଷା ପାଇବାକୁ ବୁଢ଼ୀମଙ୍ଗଳାଙ୍କ ପାଖରେ ଆପଣାର ସନ୍ତାନ ଆକାଂକ୍ଷାର ତୀବ୍ରତା ଅତି ସୁନ୍ଦର ଭାବେ ବିବିଧ ଉଦାହରଣ ମାଧମରେ ସୂଚିତ। ଏହି ଆକାଂକ୍ଷାକୁ ପରବର୍ତ୍ତୀ ସମୟରେ ପୁଞ୍ଜିକରି ଚମ୍ପା ନିଜର ଚକ୍ରାନ୍ତରେ ହେଇଚି ସଫଳ। ମରୁଆ ଦାରୋଗାଙ୍କୁ ଦେଇଥିବା ସାକ୍ଷ୍ୟରେ ଛ'ମାଣ ଆଠଗୁଣ୍ଠ ଜମି ପାଇଁ ସାରିଆର ଆକୁଳତା, ସାଆନ୍ତାଣୀଙ୍କ ତାପ୍ରତି ସମବେଦନା ରୂପାନ୍ତରିତ। ସାରିଆ ମୃତ୍ୟୁବରଣ କରିଥିଲା। ଅନଶନ ଯୋଗୁଁ। ଏ ମୃତ୍ୟୁକୁ ମଂଗରାଜ ଠେଙ୍ଗାରେ ମାରି ହତ୍ୟା କରିଛନ୍ତି - ଏପରି ଭାବରେ ଚିତ୍ରଣ କରାଯାଇଥିଲା। ସାରିଆ ଭିତରେ ଏକ ନୀରବ ଓ ନିରୀହ ନାରୀତ୍ୱର ଚିତ୍ରମିଳେ। ହିତୋପଦେଶ ପରିଚ୍ଛେଦରେ ସେ ପ୍ରତ୍ୟକ୍ଷ ଭାବେ ଦି ଚାରୋଟି ମାତ୍ର ସଂଳାପ କହିଚି। ନଚେତ ସେ ନୀରବ। ତାର ନୀରବତା ଭିତରେ ଧ୍ୱନିତ ହୁଏ ବହୁବିଧ କଥା।

**ସୀତା -** (ପାଠୋଇବୋହୂ) ପେସ୍କାର ରାଜକିଶୋର ବାବୁଙ୍କ ମା'। ମୁକ୍ତାର ଗୋପାଳଚରଣଂକ ମା' ପଦ୍ମାବତୀଂକର ନିଘନ ବାନ୍ଧବୀ ! ପଦ୍ମାବତୀଙ୍କ ମୃତ୍ୟୁରେ ମୁକ୍ତାରଙ୍କ ସ୍ତ୍ରୀଙ୍କୁ ବୋଧଶୋଧ ଦେଇଥିଲେ, ପ୍ରତ୍ୟହ ତାଙ୍କ ଘରକୁଯାଇ ଭଲମନ୍ଦ ତଦାରଖ କରୁଥିଲେ। ଅଶିକ୍ଷିତା ସରସ୍ୱତୀଙ୍କ ମୂଢ଼ତା ହେତୁ ଘଟିଥିବା ଦୁର୍ଘଟଣାବେଳେ ଉପସ୍ଥିତ ବୁଦ୍ଧିର ପରିଚୟ ଦେଇ ପରିସ୍ଥିତିର ମୁକାବିଲା କରିଥିଲେ। ଅର୍ଜ୍ଜୁନାଭଣ୍ଡାରୀଠାରୁ ଘଟଣା ବିଷୟରେ ଅବଗତ ହୋଇ ସମସ୍ୟାର ସମାଧାନ କରିଥିଲେ।

**ସୁକାନ୍ତ ବାବୁରାୟ -** (ପ୍ରାୟଶ୍ଚିତ୍ତ) କଟକ ଜେନେରାଲ ହସପିଟାଲର ଆସିଷ୍ଟାଣ୍ଟ ସର୍ଜନ। ପ୍ରାୟ ପାଞ୍ଚବର୍ଷଧରି ଗୋବିନ୍ଦ ସହ ବଂଧୁତା ଥିଲା। ଜଣେ ନିର୍ଲୋଭ ଓ ଦୟାଳୁ ଡ଼ାକ୍ତର। ଆପଣା ବଂଧୁ ବାଂଧବ ବା ଦରିଦ୍ର ରୋଗୀଠାରୁ ଅର୍ଥଦାବୀ କରୁନଥିଲେ। ଗୋବିନ୍ଦ କ୍ଷଣିକ୍ତ ହୋଇ ଚିକିତ୍ସିତ ହେବା ବେଳେ ଏହାଙ୍କ ବିଶେଷ ଯତ୍ନ ଲାଭ କରିଥିଲେ। ଗୋବିନ୍ଦ ସହ ଧର୍ମ, ପୁନର୍ଜନ୍ମ ଭାରତୀୟ ଦର୍ଶନର ଚର୍ଚ୍ଚା କରୁଥିଲେ। ତାର ମା' ଓ ପତ୍ନୀଙ୍କ ମୃତ୍ୟୁସଂବାଦ ଜଣାଇଥିଲେ। ଗୋବିନ୍ଦ ଡ଼ାକ୍ତରଖାନାରୁ ଅନ୍ତର୍ଦ୍ଧାନ ହେବାପୂର୍ବରୁ ଏହାଙ୍କ ନାମରେ ଚିତ୍ର ଓ ଅର୍ଥାଦି ରଖିଯାଇଥିଲା।

**ସେକ୍ ରହିମ୍ ବକ୍ସ -** (ମାମୁ) ପ୍ରଭୁଦୟାଳ ଠିକ କରିଥିବା ତୁଳସୀପୁର ବଂଗଳାର ବବର୍ଚ୍ଚି। ପ୍ରଭୁଦୟାଳ ଏହାକୁ 'ରାମପଣ୍ଡା' ଭାବେ ଗୋଛାଏ ପଇତା ଦେଇ ସଜାଇଥିଲା।

ପରବର୍ତ୍ତୀ ଅଂଶରେ 'ଖୋଦାବକ୍ସ' ଭାବେ ଫକୀରମୋହନ ଏହାର ନାମ ଭୁଲକ୍ରମେ ଉଲ୍ଲେଖ କରିଛନ୍ତି । ଓକିଲ ଭାବେ ପରଦିନ ସକାଳେ ଇଏ ରାଘବ ମହାନ୍ତି ପାଖକୁ ପୁଣି ଆସିଥିଲା ।

**ସେକ୍ ସମସର ଖାଁ -** (ଲଛମା) ମୁର୍ଶିଦାବାଦ ଦରବାରର ଜଣେ ହଜାରି ମନ୍‌ସବ୍‌ଦାର । ଦଶମ ପରିଚ୍ଛେଦରେ ସୋସୋ ଗ୍ରାମରେ ନାଗାମହନ୍ତ ଛଦ୍ମବେଶରେ ଆସି ମୋଗଲ ଫଉଜଦାର ମୀରକାଶୀମ୍‌ଙ୍କୁ ସମ୍ବାଦ ଦେଇଥିଲେ ଯେ ଖୋଦ୍ ସରକାର ମୁର୍ଶିଦାବାଦରୁ ବାଲେଶ୍ବର ରମାନା ହେବେ ଓ ମୀରକାଶିମ୍ ମାନ୍‌ଧାତାଙ୍କ ପାଖକୁ ଯାଇ ରହିଥିବେ । ଖବର ଦାନ ପରେ ନାଗା ମହନ୍ତ ଆପଣା ଦଳ ସହ ଭଦ୍ରକ ବାଟଦେଇ ବାଲେଶ୍ବର ବନ୍ଦର ଆଡ଼କୁ ଯାଇଥିଲେ । ଫୁଲଓୟାର ଯୁଦ୍ଧରେ ବର୍ଗୀଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ଆପଣା ସାହସ ଓ ବୀରତ୍ୱର ପରିଚୟ ଦେଇଥିଲେ । ଇଏ ମଧ୍ୟ ଚବିଶ ପରିଚ୍ଛେଦରେ କେତେଜଣ ହାବିଲଦାର ନବାବ ପକ୍ଷଭୁକ୍ତ ହେବେ ବୋଲି ଜାଲଚିଠି ଲେଖିବାକୁ ପ୍ରସ୍ତାବ ଦେଇଥିଲେ ।

**ସେଖ ଇନାଏତ୍ ହୋସେନ୍ -** (ଛମାଣ ଆଠଗୁଣ୍ଠ) ପୁଲିସ୍ ଦାରୋଗା । ପାର୍ସିଭାଷାରେ ଜ୍ଞାନସୀମିତ । ବାରବରଷ ହେଲା କେନ୍ଦ୍ରାପଡ଼ା ଥାନାରେ ଥିବା ସୂଚିତ । ରତନପୁରର ଡ଼ୋମମାନଙ୍କୁ ଜେଲ କରାଇଦେଲେ ହଜାରେ ଟଂକା ଦେବେ ବୋଲି ମଂଗରାଜ କହି ଫାଙ୍କି ଦେଇଥିବା, ଏହାଙ୍କ ମଙ୍ଗରାଜ ପ୍ରତି ବିଦ୍ରୂପର ବ୍ୟାଖ୍ୟାରୁ ବ୍ୟଞ୍ଜିତ ।

**ସେଖ କେରାମତ୍ ଅଲ୍ଲି -** (ଛମାଣ ଆଠଗୁଣ୍ଠ) ଆଲିମିଆଁ ନାମରେ ମଧ୍ୟ ଖ୍ୟାତି । ଏଇ ଚରିତଙ୍କ ପୂର୍ବ ନିବାସ ଆରା ଜିଲ୍ଲା (ବିହାର ପ୍ରଦେଶ) । ମେଦିନୀପୁର ଥିଲା ବର୍ତ୍ତମାନର ନିବାସ । ଆଦି ବ୍ୟବସାୟ ଥିଲା ଘୋଡ଼ା ସୌଦାଗରୀ । କ୍ଷେତ୍ରଥିଲା ବଂଗଳା ଓ ଓଡ଼ିଶା । ମେଦିନୀପୁର ଜିଲ୍ଲା ବଡ଼ ସାହବଙ୍କୁ ବିକିଥିବା ଏହାଙ୍କ ଘୋଡ଼ାଟି ଭଲ ପଡ଼ିବାରୁ ବଡ଼ ସାହାବ ଏହାଂକ ସଂପର୍କରେ ବିବିଧ କଥା ପଚାରି ଜାଣିଥିଲେ । ବ୍ୟବସାୟରେ ବିଶେଷ ଲାଭ ହେଉନଥିବା ଶୁଣି ସେ ଚାକିରି ଦେବାକୁ ଚାହିଁ ଶିକ୍ଷାଗତ ଯୋଗ୍ୟତା ବିଷୟରେ ପଚାରିଲେ । ଆଲିମିଆଁର ଉତ୍ତର ଥିଲା, "ହଜୁର, ମୁଁ ପାରସି ଜାଣେ, କାଗଜ କଲମ ଦେଉନ୍ତୁ ମୋ ନାମ ପୁରା ଲେଖିଦେବି ।" ମିଆଁ ପାଇଥିଲେ "ଥାନା ଦାରୋଗାଇ" ଚାକିରି । ଏଥିରେ ସେ ବିସ୍ତୃତ ବିଷୟ ସମ୍ପତ୍ତି ଅର୍ଜନ କଲେ; ଏଥିରୁ ଉଲ୍ଲେଖଯୋଗ୍ୟ ଚାରିଗୋଟା ଜମିଦାରୀ ତାଲୁକ ମଂଗରାଜଙ୍କ ତାଲୁକ ଫତେପୁର ସରଷଣ୍ଡ ମଧ୍ୟ ପର୍ବେ ଏହାଂକ ଜମିଦାରୀ ଥିଲା । ସେକ୍ ଦିଲ୍‌ଦାର ମିଆଁ ଏହାଂକ ସୁପୁ ତ୍ର ।

**ସେଖ ତୋରାବଲ୍ଲି -** (ଛମାଣ ଆଠଗୁଣ୍ଠ) ଗୋପୀ ସାହୁ ଦୋକାନ ଘରେ ଚଂପାର ଖୁଣ୍ ତଦାରଖ୍ ପାଇଁ ମକ୍ରାମପୁରରୁ ବାଲାଗସ୍ତି - ଜମାଦାର ସେଖ ତୋରାବଲ୍ଲି ଆସିଥିଲେ । ଜଣେ ରବେୟା ହାକିମ ଭାବେ ସେ କୁଖ୍ୟାତ । ଯାଙ୍କ ନାଁ ଶୁଣିଲେ ଗର୍ଭିଣୀଗାଈ ବାଟ ଛାଡ଼ଦିଏ ।

**ସେଖ୍ ଦିଲ୍‌ଦାର ମିଆଁ -** (ଛମାଣ ଆଠଗୁଣ୍ଠ) ସେଖ୍ କେରାମତ୍ ଅଲ୍ଲିଙ୍କ ପୁଅ । ପିତାଥିଲେ

ଥାନା ଦାରୋଗା । ବିଷୟ ସମ୍ପତ୍ତି ପ୍ରଚୁର । ଚାରି ଚାରିଟି ଜମିଦାରୀ । ପୁଅକୁ ''ଲାଏକ୍'' ତଥା ''ଇଲମ୍‌ଦାର'' କରିବା ସକାଶେ ଦାରୋଗାଙ୍କର ତ୍ରୁଟି ନ ଥିଲା । ପାରସି ପଢ଼ାଇବାକୁ ଘରେ ''ଆଖୁନ୍‌ଜୀ ନିଯୁକ୍ତ ଥିଲେ । ଛୋଟାମିଆଁ ଭାବେ ପରିଚିତ ଦିଲ୍‌ଦାର ମିଆଁ ପନ୍ଦରବର୍ଷ ମଧ୍ୟରେ ପାରସି ବର୍ଣ୍ଣମାଳା ଓ ବନାନ୍ ଶିଖି ଯାଇଥିଲେ । ଇଏ ବାପାଙ୍କ ପରେ ଜମିଦାର ହୋଇଥିଲେ । ଇଏ ଥିଲେ ବିଳାସୀ ଓ ଦୂରଦୃଷ୍ଟିହୀନ । ଏହାଙ୍କ ଆର୍ଥିକ ଦୁର୍ଦ୍ଦଶାରୁ ଲାଭ ଉଠାଇ ମଂଗରାଜ ହୋଇଥିଲେ ଫଂତେପୁର ସରଷଣ୍ଡର ସରବରାକାର ।

**ସେଖ୍ ଫକୁ** - (ଛମାଣ ଆଠଗୁଣ୍ଠ) ସେଖ୍ ଦିଲ୍‌ଦାର ମିଆଁଙ୍କ ପିଆଦା । ଇଏ ଦିଲୁ ମିଆଁଙ୍କ ମେହେଫିଲ୍ ଅର୍ଥାଭାବରୁ ନୀରବ, ନିଥର ହୋଇ ରହିଥିବାବେଳେ ଖବର ଦେଇଚି, 'ଓଡ଼ିଶା ମହାଜନୀରୁ ଜଣେ ମହାଜନ ମୁଲାକାତ୍ ସକାଶେ ଆସିଛି । ' ଇଏ ମହାଜନ ଥିଲେ ସ୍ୱୟଂ ମଂଗରାଜ । ଏଇଠି ହିଁ ଫତେପୁର ସରଷଣ୍ଡ ଜମିଦାରୀ ପ୍ରାପ୍ତିର ବୀଜ ସେ ବପନ କରିଥିଲେ ।

**ସୁବଳ ମହାକୁଡ଼** - (ରାଣ୍ଡୀପୁଅ ଅନନ୍ତା) ଅନନ୍ତାର ବାପା । ସୁବଳସିଂହ ଭାବେ ମଧ୍ୟ ପରିଚିତ । ମଇଁଷୀଆଳ । 'ପାଞ୍ଚହତା ମର୍ଦ୍ଦ - ବାହୁଯୋଡ଼ାକ ଗୋଲଗୋଲ ମୋଟାମୋଟା, ଦୁଇ ହାତରେ ବେଢ଼ା ପାଇବ ନାହିଁ, ମୁଠୁଣିଏ ଚଉଡ଼ାଛାତି, ଚକାମୁହଁ, ଚଉଡ଼ା ନାକ, ଜଙ୍ଘଂଗୁଡ଼ାକ ସଳଖ ମୋଟା ଶାଳଗଛା ପରି ।' ରୂପ ଯେମିତି ବିରାଟ, ସାହସ ସେମିତି ଅସୀମ । ଏହି ସାହସର ପରିଚୟ ପାଇ ପୁଲିସ ସାହେବ ତାକୁ କନେଷ୍ଟବଳ ଓ ପରେ ଜମାଦାର କରିଥିଲେ । ସ୍ତ୍ରୀ ଦେବକୀ ଓରଫ ସିଂହାଣୀ ଏହାର ପରାମର୍ଶଦାତା ଥିଲା । ଅକସ୍ମାତ ଜ୍ୱର ସନ୍ନିପାତ ରୋଗରେ ଯେ ମୃତ୍ୟୁବରଣ କରିଥିଲେ । ସେତେବେଳେ ପୁଅର ବୟସ ଚାରି ବରଷ ।

**ସୁଲୋଚନା** - (ପେଟେଣ୍ଟ ମେଡ଼ିସିନ) ରାମକୃଷ୍ଣ ମହାନ୍ତିଙ୍କ 'ପରମାସୁନ୍ଦରୀ, ଖୁବ୍ ଗୁଣବତୀ' କନ୍ୟା ଓ ଚନ୍ଦ୍ରମଣି ପଟ୍ଟନାୟକଙ୍କ ପତ୍ନୀ । ସ୍ୱାମୀ ମଦ୍ୟପ, ବେଶ୍ୟାସକ୍ତ । ସେ ସ୍ୱାମୀଙ୍କ ପ୍ରତି ଅନୁରକ୍ତ ଅଥଚ ବଦଭ୍ୟାସଗୁଡ଼ିକ ଛଡ଼ାଇବାପାଇଁ କଠୋର ହସ୍ତ । ତାଂକ ଗୁଣର ପରିଚୟ ରୋଷେୟା ବ୍ରାହ୍ମଣର ଭାବନା ମାଧ୍ୟମରେ ପ୍ରତିଫଳିତ 'ଗୋଟିଏ ଅଦ୍ଭୁତ ସ୍ତ୍ରୀ, ସ୍ୱାମୀ ଉପରେ ଭକ୍ତିର ସୀମା ନାହିଁ, ବାବୁ ଟିକିଏ ବାଧକି ପଡ଼ିଲେ ଆପେ ନଖାଇ ନପିଇ ଦିନଯାକ ପାଖରେ ବସି ସେବା କରନ୍ତି, ଆଉ ରାଗିଲେତ ବାଡ଼ିପତ୍ତୁ, ଛାଞ୍ଚୁଣୀପତ୍ତୁ, ଯାହା ହାତରେ ପଡ଼ୁ ବାଡ଼େଇବାକୁ ଧାଆଁନ୍ତି - ଯାବତ ଖରାପ କଥାରେ ଗାଳି ଦିଅନ୍ତି । ମନବି ସେଇପରି ବଡ଼, ମାତ୍ର ଟିକିଏ ରାଗୀ, ମୁହଁଟା ବଡ଼ ଟାଣ ।' ସମଗ୍ର ଗଳ୍ପ ତାଂକର ଏଇ ପରସ୍ପର ବିରୋଧୀଗୁଣଯୁକ୍ତ ବ୍ୟକ୍ତିତ୍ୱକୁ ଦ୍ୟୋତିତ କରୁଛି । ସ୍ୱାମୀଙ୍କ ଅପକର୍ମ, ବଦଭ୍ୟାସପାଇଁ ସେ ଯେପରି କଠୋର ଓ ଉଗ୍ର, ଆପଣା ଆଚରଣପାଇଁ ସେତିକି ଅନୁତପ୍ତ ମଧ୍ୟ । ଏହାଙ୍କ ବ୍ୟକ୍ତିତ୍ୱର ବଳିଷ୍ଠତା ଯୋଗୁଁ ଫକୀରମୋହନଂକ ଅନ୍ୟାନ୍ୟ ନାରୀଚରିତ୍ର ଅପେକ୍ଷା ଯେ ଅନନ୍ୟ, ଅନୁପମ ।

**ସ୍ୱରୂପ ମାଝି** - (କମଳା ପ୍ରସାଦ ଗୋରାପ) ବାବୁ ରାମହରି ନାୟକଂକ କମଳାପ୍ରସାଦ ଗୋରାପର ମାଝି । ଜାହାଜ ଦୁର୍ଘଟଣାର କାଳ୍ପନିକ କାହାଣୀ ବୟାନ କରି ରାମହରି ବାବୁଙ୍କ

ବାରହଜାର ଟଂକା ଖଲାସି ଓ ନିଜ ମଧରେ ବାଣ୍ଟି ନେଇଥିଲା । ରାମହରି ବାବୁଙ୍କ ଧାରଣାରେ ଇଏ କୋଡ଼ିଏ ବର୍ଷର ନିମକସଚା ମାଝି । ଇଏ କମଳାପ୍ରସାଦ ଗୋରାପ ନେଇ ବଣିଜ କରି ମାନ୍ଦ୍ରାଜ ଯିବାବେଳେ ବହୁଲୋକଙ୍କଠାରୁ 'ବଟମ' ବା ଆଗୁଆ ଟଂକା (advance) ନେଇ ଜିନିଷ କିଣିଥିଲା । କମଳା ପ୍ରସାଦର ଲେଉଟାଣୀ ଯାତ୍ରା ବେଳେ ଇଏ ଅର୍ଥଲୋଭ ସଂବରଣ କରି ନପାରି ମାଲିକର ଅର୍ଥ ଆତ୍ମସାତ କଲା ଏବଂ ଶେଷରେ ଧରାପଡ଼ି ଜେଲ ଗଲା ।

ହସ୍ତୁ ତଣ୍ଡେଲ - (କାଳିକା ପ୍ରସାଦ ଗୋରାପ) ଗତବର୍ଷ ମକର (ମାଘ) କୃଷ୍ଣତୃତୀୟାରେ କାଳିକାପ୍ରସାଦ ଗୋରାପରେ ତଣ୍ଡେଲ ରୂପେ ଯାଇଥିଲା ଗନ୍ତବ୍ୟ ସ୍ଥଳ ଯବଦ୍ୱୀପରେ ପହଞ୍ଚିବା ପୂର୍ବରୁ ତୁର୍କ ଜଳଦସ୍ୟୁଙ୍କଦ୍ୱାରା ବନ୍ଦୀ ହେଲା । ଛଦ୍ମ ଦ୍ୱୀପରେ ଜଳଦସ୍ୟୁ ରାଜା "ଗଞ୍ଜାଇ ନିଶ" (ganjalish) ଅଧୀନରେ କୀୟତ୍‌କାଳ ରହିଲା । ତୁର୍କ ଜଳଦସ୍ୟୁଙ୍କ ସହ, ତାଙ୍କ ଜାହାଜରେ ଡକାୟତିପାଇଁ ଗାଁକୁଯାଇ ସେଠାରୁ କୌଶଳ କ୍ରମେ ଲୁଚିଲୁଚି ଛ'ମାସ ପରେ ବାଲେଶ୍ୱରରେ ପହଞ୍ଚିଲା । ଏ ଦକ୍ଷ ଓ ବୁଦ୍ଧିମାନ ତଣ୍ଡେଲ ।

ହସ୍ତୁ ସାମଲ - (ପୁନର୍ମୂଷିକୋଭବ) ମକ୍ରାମପୁର ଗାଁର ଜନୈକ ଗ୍ରାମବାସୀ । ରାମା ବାରିକ ପକ୍ଷର ଅନ୍ୟତମ ସାକ୍ଷୀ ।

ହରଦେବ ଲାଲ ଭଗତ - (ପ୍ରାୟଶ୍ଚିତ୍ତ) ରାଜୀବଲୋଚନ କଟକ ବକ୍ସିବଜାର ପାଖରେ ନେଇଥିବା ଭଡ଼ାଘରର ମାଲିକ ।

ହରିପଣ୍ଡା - (ମାମୁଁ) ଚାନ୍ଦମଣି ଓ ପ୍ରତାପଂକ ମଙ୍ଗଳକୃତ୍ୟ ସଂପର୍କରେ ଟିପ୍‌ପଣୀ ନେଇ ଚରିତ୍ରଟି କହେ ଯେ ପ୍ରତାପ କାର୍ତ୍ତିକପରି । ରୂପରେ ଚାନ୍ଦମଣି ତାଂକର ସମକକ୍ଷ ହୋଇ ପାରିବ ନାହିଁ ।

ହରିପ୍ରିୟା - (ପ୍ରାୟଶ୍ଚିତ୍ତ) ଗୋବିନ୍ଦଚନ୍ଦ୍ରଙ୍କ ମା'ଓ ବୈଷ୍ଣବଚରଣ ପଟ୍ଟନାୟକଙ୍କ ସ୍ତ୍ରୀ । ବାପଘର ଗୋପାଳପୁର । ଏକମାତ୍ର ସଂତାନ ଗୋବିନ୍ଦର ବିବାହପାଇଁ ସ୍ୱପ୍ନବିଭୋର ଓ ପ୍ରାକ୍‌ପ୍ରସ୍ତୁତିରେ ବ୍ୟସ୍ତଥିବାବେଳେ ଅପ୍ରତ୍ୟାଶିତ ତାର ଗୋଲାମ ମହାନ୍ତି ପରିବାରରେ ବିବାହ ସଂବାଦ ଶୁଣି ଶଯ୍ୟାଶାୟୀ ଓ ମୃତ୍ୟୁବରଣ । ଜଣେ ମମତାମୟୀ ମା'ଭାବେ ଏହାଙ୍କ ଚିତ୍ରଣ ଘଟିଛି । ଗୋବିନ୍ଦର ବିବାହ ପରେ ତାକୁ ହତାଦର ନକରି ସେ ଅନ୍ୟୂନ ଥରେ ଦେଖିବାକୁ ଚାହିଁଥିଲେ ।

ହରିବୋଲ ପଟ୍ଟନାୟକ - (ସଭ୍ୟଜମିଦାର) ଶ୍ୟାମପୁର ଗ୍ରାମବାସୀ । ଜୀବମହାପାତ୍ରଙ୍କ ଦ୍ୱାରା ପ୍ରତିଷ୍ଠିତ ଗ୍ରାମ ସଭାରେ ଆଗତ ଏକ ପ୍ରସ୍ତାବକୁ 'ଦ୍ୱିତୀୟ' କରିଥିଲେ । ମାଇନର ପାଶ । ବିଦୁପୁର ପୋଷ୍ଟଅଫିସର ସବ୍‌ପୋଷ୍ଟମାଷ୍ଟର । ଟ ୧୬୨.୪୨ ଚୋରୀ କରି ଛ'ମାସ ଜେଲ ମଧ ଯାଇଥିଲେ । ଫଳରେ ଚାକିରି ଚାଲିଯାଇଥିଲା । ରାଜୀବ ପ୍ରତିଷ୍ଠିତ 'ଜ୍ଞାନବର୍ଦ୍ଧିନୀ' ଓ 'ସ୍ତ୍ରୀ ସ୍ୱାଧୀନତା ବିବର୍ଦ୍ଧିନୀ' ସଭାର ସଂପାଦକ ଭାବେ ଦାୟିତ୍ୱ ତୁଲାଇଥିଲେ ।

ହରିବୋଲ ବାରିକ - (ମାମୁଁ) ମୂଳନାମ ଚତୁରା ବାରିକ । କଥା କଥାକେ 'ହରିବୋଲ' କହୁଥିବାରୁ ତା ନାମ ଏପରି ହୋଇଥିଲା । ଜମିଦାର ପ୍ରତାପ ଉଦିତ ମଲ୍ଲଂକ ମୃତ୍ୟୁ ସମୟରେ

ଅବସ୍ଥାର ଗୁରୁତ୍ୱ ବୁଝାଇ ଘନକୁ ଉତ୍ତରରାୟ ପରିବାର ତିନିପୁରୁଷରୁ ଏହି ବାତକପି' ରେ ବିଦାୟ ନେଉଥିବା ଜଣାଇଛି । ସେ ଆଖପାଖ ଗାଁମାନଙ୍କରେ 'ଡାକ୍ତରୀ' କରେ । ତାର ବ୍ୟକ୍ତିତ୍ୱ ଏପରି ଯେ ଲୋକେ ତା କଥା ଶୁଣନ୍ତି ମାନନ୍ତି । ନ୍ୟାୟ ନିଶାପରେ ତାକୁ ଡାକରା ପଡ଼େ । ଏହି ଡ଼କରା ବ୍ୟକ୍ତି ପାଇଁ ବିଭିନ୍ନ ଗ୍ରାମ ଗଣ୍ଡଗୋଳର ସମାଧାନ, ତିକ୍ତତାହୀନ ଭାଇରାଗ ଅଦି ଘଟୁଥିଲା । ପାଉତିନପାଇ ଖଜଣା ନ ଦେବାକୁ ପ୍ରଧାନ ପ୍ରଜାମାନଙ୍କୁ ପ୍ରବର୍ତ୍ତାଇଥିଲା । ମୋଟ ଉପରେ ଏହାର କାର୍ଯ୍ୟାବଳୀ ଥିଲା ନାଜର ନଟବରଂକ କୁଶାସନ ବିରୁଦ୍ଧରେ ଏକ ଅକୁତୋଭୟ ପ୍ରତିବାଦ ।

**ହରି ମିଶ୍ର** - (ପାଠୋଇ ବୋହୂ) ରାଧେ ବାବାଜୀ ମଠର ପୁରାଣପଣ୍ଡା ।

**ହରିସା** -(ରେବତୀ)- ଗାଁର ଦୋକାନୀ । 'ଘରଗ୍ରାମ ମଝିରେ । ତାହାର ରୀତିମତ ଦୋକାନ ନାହିଁ । ଚାଉଳ, ଡାଲି, ଲୁଣ, ରଖିଥାଏ । କୌଣସି ଦିନ ବିଦେଶୀ ଲୋକ ପହଞ୍ଚିଗଲେ କିଣନ୍ତି କିମ୍ବା ହେଲେ ଗ୍ରାମ ଲୋକଙ୍କର କିଛି ଦରକାର ହେଲେ କିଣନ୍ତି ।' ଜେଜୀମା ନିଜର ଚରମ ଆର୍ଥିକ ଦୁଃସ୍ଥିତିରେ କଣା ଡାଳଟିଏ ନେଇ ତାର ସାହାଯ୍ୟ ଆଶାରେ ଯାଇଥିଲେ । ଶସ୍ତାରେ ଡ଼ାଲଟି ପାଇବା ଆଶାରେ ଭଲନଥିବା କଥା କହିଲା ଓ ବହୁ ଟାଳଟୁଳ କରି କିଛି ଖାଦ୍ୟ ପଦାର୍ଥ ଦେଇଥିଲା । ଲୋଭୀ ଦୋକାନୀ ଭାବେ ହରିସାର ଆଗମନ ଘଟିଚି ।

**ହରି ସାଉ** - (ମାମୁ) ଜନୈକ ତେଲି ମହାଜନ । ଗୋକୁଳ ପଟ୍ଟନାୟକର ନାଜର ନଟବର ପାଖକୁ ଲେଖା ଚିଠିରେ ଏହାର ନାମୋଲ୍ଲେଖ ଅଛି । ଯେ ନଟବରର ଆଦେଶ ଅମାନ୍ୟ କରିବାରୁ ମିଛ କେଶ ଯୋଗେ ବନ୍ଧାଯାଇ ଦୁଇଶହ ଟଂକା ଜୋରିମାନା କରାଯାଇଥିଲା । ନାଜର-ଶୋଷଣ ଓ ଚକ୍ରାନ୍ତର ଅନ୍ୟତମ ଉଦାହରଣ ଭାବେ ଚରିତ୍ରଟିର ଆଗମନ ।

**ହରି ସିଂହ** - (ଡାକମୁନ୍‌ସୀ) ମୁଖ୍ୟଚରିତ୍ର ଗୋପାଳର ବାପା । ଦରମା ମାସକୁ ନ ଟଙ୍କା । ମଫସଲର ସାନବଡ଼ ଅନେକ ପୋଷ୍ଟ ଅଫିସରେ କାମକରି ବର୍ତ୍ତମାନ କଟକ ସଦର ପୋଷ୍ଟ ଅଫିସରେ ପ୍ରମୋଶନ ପାଇ ହେଡ୍ ପିଅନ୍ । କୌଣସିମତେ ପାଞ୍ଚଟଂକାରେ ଚଳି ଘରକୁ ଚାରିଟଂକା ପଠାନ୍ତି । ଘରେ ସ୍ତ୍ରୀ ଓ ଆଠବର୍ଷର ପୁଅ ଗୋପାଳ । ପୁଅ ଅପର ପ୍ରାଇମେରୀ ସ୍କୁଲରେ ପଢ଼େ; ଦରମା ମାସକୁ ଦୁଇଅଣା । ପୁଅର ବହି ଖାତା କିଣାରେ କେବେ କେବେ ଅଧିକ ପଇସା ଲାଗିଲେ, ଇଏ ଦିନେ ଦିନେ ଉପାସ ରହିଯାନ୍ତି । ଭାବନ୍ତି ପୁଅ ପଢୁ; ନିଜେ ପଛେ ଉପାସ ରହନ୍ତୁ । ଯାଙ୍କର ସ୍ୱପ୍ନ ପୁଅ କଟକରେ ଇଂରାଜୀ ପଢ଼ି ପୋଷ୍ଟ ମାଷ୍ଟରଟିଏ ହେଉ । ପେନ୍‌ସନ୍ ନେବାବେଳ ଆଗତ ହେବାରୁ ପୁଅର ପାଠ୍ ଚିନ୍ତାରେ ଯାଙ୍କୁ ନିଦ ହୁଏନାହିଁ । ଦରଖାସ୍ତ ଦେଇ ଚାକିରୀକାଳ ବୃଦ୍ଧି କରାନ୍ତି । ଏତିକି ବେଳକୁ ସ୍ତ୍ରୀ ବିୟୋଗ ଘଟେ ଓ ଇଏ ପୁଅକୁ କଟକ ଆଣନ୍ତି, ନିଜ ପେନ୍‌ଶନ୍ ପରେ ଧାର କରଜ, ବିକାବଟା କରି ପୁଅକୁ ପାଠପଢ଼ାନ୍ତି । ପୁଅ ପାଶ୍ କଲେ ନିଜର ସବୁ କଷ୍ଟ ମେଣ୍ଟିବା ସ୍ୱପ୍ନ ଦେଖନ୍ତି ।

ପୁଅ ମାଇନର ପାଶ୍ କରିବାରୁ ପୋଷ୍ଟମାଷ୍ଟର ବନାଇ ଦିଅନ୍ତି । ପୁଅର ଚାକିରି ହେତୁ ସ୍ତ୍ରୀକୁ ମନେ ପକାଇ ଆନନ୍ଦରେ ଅଶ୍ରୁ ବିସର୍ଜନ କରନ୍ତି । ପୁଅର ପ୍ରଥମ ମାସର ଦରମା ହାତରେ ପାଇ ଆନନ୍ଦରେ ପୁଅ ପାଇଁ ଜୋତା, ଲୁଗା, ଇତ୍ୟାଦି ଦରକାରୀ ଜିନିଷ କିଣି ଆଣନ୍ତି । ନିଜକଥା ଭୁଲି ପୁଅର ଗାଧୁଆ ପାଧୁଆ, ଲୁଗାଧୋଆ, ଖିଆପିଆ ସବୁ ଦେଖନ୍ତି । ପୁଅର ସୁଖଲାଗି ବ୍ୟସ୍ତ ଥାଇ ହରିନାମ ସୁଦ୍ଧା ଭୁଲିଯାନ୍ତି ।

କ୍ରମେ ଧୂଳି ଧୂସରିଆ ବୁଢ଼ାକୁ 'ବାପ' ଡ଼ାକିବାକୁ ପୁଅ କୁଣ୍ଠିତ ହୁଏ । ବାପକୁ ମନହେଲେ ରହ ମନ ନ ହେଲେ ଯା ବୋଲି ପୁଅ କହିବାରୁ ବୁଢ଼ାର ଚେତାପଶେ । କିନ୍ତୁ ମନଖୋଲି କାନ୍ଦି ମଧ ପାରନ୍ତି ନାହିଁ, କାଳେ ପୁଅର ଅମଙ୍ଗଳ ହେବ । ପୁଅ ମଫସଲରେ ଇଏନ୍ କଲାଦିନ ତାର ଆଞ୍ଚାପାଳି ସବୁ ଜିନିଷପତ୍ର ମୁଣ୍ଡାଇ ବହୁକଷ୍ଟରେ ମଫସଲରେ ପହଞ୍ଚିଛନ୍ତି । ମାତ୍ର ତାଙ୍କର ସମସ୍ତ ତ୍ୟାଗ ଓ ସେବା ନିଷ୍ଫଳ ହୋଇଛି । ମଫସଲର ହାକିମପୁଅ ମଳିମୁଣ୍ଡିଆ ବାପ ସହ କଥା ହେବାକୁ କୁଣ୍ଠିତ ହୋଇଛି । ପୁଅଠୁ 'ଇଂରାଜୀ ଘୁଷି' ଖାଇ ଶେଷରେ ହୃଦୟ ବିଦାରକ ଅବସ୍ଥାରେ ନିଜ ଗାଁକୁ ଫେରି କ୍ଷେତବାଡ଼ି କରି ଆରାମରେ ଦିନ ବିତାଇଛନ୍ତି ।

**ହରିହର ମର୍ଦ୍ଦରାୟ -** (ପ୍ରାୟଶ୍ଚିତ୍ତ) ପୁରୀ ଜିଲ୍ଲା ଡ଼େଲାଙ୍ଗ ପରଗଣାର ଜମିଦାର । ପୂର୍ବରୁ ନାବାଳକ ଥିବାରୁ ମାହାଲ ସରକାରଙ୍କ ହାତରେ ଥିଲା । ଦଶବର୍ଷଯାଏ କଲିଜିଏଟ୍ ସ୍କୁଲରେ ପଢି ମେଟ୍ରିକ୍ୟୁଲେଶନ ଥାର୍ଡ଼କ୍ଲାସ ପର୍ଯ୍ୟନ୍ତ ଉଠିଥିଲେ । ବାଇଶ ବର୍ଷ ପୁରିଯିବାରୁ ସରକାରରୁ ଜମିଦାରୀ ପାଇ ସଦାନନ୍ଦକୁ ନାଏବ କରି ଆପଣା ଜମିଦାରୀକୁ ନେଇଥିଲେ ।

**ହନୁମାନ ଦାସ -** (ଧୂଳିଆ ବାବା) ଦେଗାଁର ହନୁମାନ୍‌ଜୀଙ୍କ ମହନ୍ତ । ବଚନସିଦ୍ଧ ପୁରୁଷ । ନାଗପୁର ମରହଟ୍ଟା ଫଉଜଦାର ତାଂକ ମହିମା କଥା ଶୁଣି ଦର୍ଶନ କରିବାକୁ ଆସିଥିଲା । ମହନ୍ତ ମହାରାଜ କାଛଡ଼ା ଉପରେ ବସି ଗଞ୍ଜେଇ ଟିପୁଥିବା ଅବସରରେ 'ହୁଁ-ଚେଲ୍ ବାବା କାଛଡ଼ା ଚେଲ୍' କହିବାରୁ କାଛଡ଼ା ଉଡ଼ିଯାଇଥିଲା । ମହନ୍ତ ଗାଦିରେ ଏ ଥିଲେ ବାରଶ ବାର ବରଷ ବାରମାସ ବାରଦିନ ।

**ହନୁ ମିଆଁ -** (ଛମାଣ ଆଠଗୁଣ୍ଠ) ଦିଲ୍‌ଦାର ମିଆଁଙ୍କ ସାଙ୍ଗ ମେହେଫିଲ୍‌ରେ ସେ ଖେମ୍‌ଟା ବାଲୀ ଖାତୁମଉନ୍ନିସା ବିଷୟରେ ପ୍ରଥମେ କହିଛନ୍ତି ।

**ହୁଣ୍ଡା ଦାସ -** (ଧୂଳିଆବାବା) ଧୂନିତଳେ ବସି ଅଗ୍ନି ଦେବତା ସାଜିଥିବା ଚେଲା ।

***

